ସାରଳା ଦାସଙ୍କ ଶ୍ରାଦ୍ଧ ବାସରରେ
ସିଦ୍ଧ କବିଙ୍କର ଉଦ୍ଦେଶ୍ୟରେ
ପ୍ରଜାତନ୍ତ୍ର ପ୍ରଚାର ସମିତିର ସଶ୍ରଦ୍ଧ ନିବେଦନ

# ସୂଚୀ


| ବିଷୟ | ପୃଷ୍ଠା |
| --- | --- |
| ୧ । ସାରଳା ଦାସ | ୧ |
| ୨ । ସାରଳ ଦାସଙ୍କ ଧର୍ମ | ୧୨ |
| ୩ । ସାରଳା ମହାଭାରତର ଐତିହାସିକ ଉପାଦାନ | ୨୧ |
| ୪ । ସାରଳା ଦାସ ଓ ଶାକ୍ତଧର୍ମ | ୩୨ |
| ୫ । ସାରଳା ଦାସ | ୬୨ |
| ୬ । ଗ୍ରଧାଚକ | ୮୮ |
| ୭ । ଅନ୍ଧ ଭକ୍ତ ଓ ଅଦ୍ୟ ସମୀକ୍ଷକ | ୯୭ |
| ୮ । ମହାକବି ସାରଳା | ୧୧୫ |
| ୯ । ସାରଳା ସାହିତ୍ୟରେ ଓଡ଼ିଆ ଭାଷାର ମୌଳିକତା | ୧୫୨ |

# ଶ୍ରଦ୍ଧାଞ୍ଜଳିଃ



( ୧ )

ଶୁଦ୍ଧାଶେଷରସାଶ୍ରୟାତ୍ମମଧୁର ପୀୟୂଷବସ୍ରାବଣୀ
ବୁଦ୍ଧାରାଧକ ହେ, ପ୍ରସନ୍ନମହସା ମର୍ତ୍ତ୍ୟେଽବତୀର୍ଣ୍ଣା ହୃ ତେ;
ଚିତ୍ତାକର୍ଷଣସୌରଭାର୍ଦ୍ଧିକଲସଦ୍‌ବୃନ୍ଦାରକୋଲ୍ଲାସିନୀ
ନିତ୍ୟାନନ୍ଦକନନ୍ଦନାତୁଳରତଃ ଶ୍ରୀମନ୍ମହାଭାରତେ ।

( ୨ )

ଦେବ୍ୟା ଶାରଳୟା ସଦାଶୟମତି ସ୍ତ୍ରେ ଦିବ୍ୟସ୍ରଗୋଜ୍ଜ୍ୱଳା;
ସେବ୍ୟା ସନ୍ତତମୁତ୍ତମାନ୍ତରଗୁଣୈଃ ସା ସର୍ବବିଦ୍ୟୋତନୀ;
କାନ୍ତିଃ ସତ୍ୟସମୁନ୍ନତେ ହୃଦ ସଦାସୀନା, ନ ଦୀନା ନୁ ତେ;
ଶାନ୍ତିଃ ଶୁଭ୍ରସୁମଞ୍ଜୁଳାତ୍ମନି ବସତ୍ୟେଷା ଖିଲଶ୍ରେୟସେ ।

( ୩ )

ଧର୍ମୋ ରକ୍ଷତି ଧାର୍ମିକଂ,—ତ୍ୱିତରଂ ପାପପ୍ରିୟୋ ନଶ୍ୟତି,
କର୍ମୋପାସକ ହେ, ସୁଦିବ୍ୟନୟନେନେଦଂ ଚିରଂ ପଶ୍ୟସି;
ବିଶ୍ୱାସୋ ବଳମେବ ଦେବ । ସୁମତେଃ, କାଲୋଽପି ଲୋପଂ ଗତ
ବିଶ୍ୱାନ୍ତର୍ବଲସଦ୍‌ଗୁରେ ! ହର ଗର୍ବଂ ଭୂତାର୍ଚ୍ଚିତଂ ଭୂତଲେ ।


Digitized by srujan ka@gmail.com

( ୪ )

ହିତାପଦାଲତେ ଭବେ ସକଳନାଶଘୋରସମ୍ଭବେ
କୃତାଘ ! ବିତସଭ୍ୟଂ ତବପୁରାଣବାଣାଶ୍ରୟଂ,
ହୃଦାସ୍ବବଳତେଜସା ବଲୟମେଷୁ ମେ ବୁଦ୍ଧଶା,
ମଦାର୍ତ୍ତିର୍ହ ସର୍ବଥା ଯଦ ତବାନୁଗୋ, ନ ବ୍ୟଥା ।

( ୫ )

ଶ୍ରୀ ଶାରଳାଚରଣପଙ୍କଜ ପୂଜକସ୍ୟ
ଶ୍ରୀ ଶାରଳାଖ୍ୟସୁମହାକବିଶେଖରସ୍ୟ
ବାଣୀ ବିଶଦମଧୁପୂରରସେନ ଭୂୟୋ
ବାଗ୍ମୂଲତାବିଚଳିତାନ୍ତରମସ୍ତୁ ଶୁଦ୍ଧଂ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

—ଜୟକୃଷ୍ଣ

---

# ସାରଳା ଦାସ

## ଶ୍ରୀ ଅନ୍ତିବନ୍ଧୁ ମହାନ୍ତି



ଆମର ଓଡ଼ିଶାରେ ଯେ ମହାଭାରତ ଘରେ ଘରେ ପଠିତ ଏବଂ ବିଶେଷ ଲୋକପ୍ରିୟ ତାହା ଭାରତର ପ୍ରାଦେଶିକ ଭାଷାରେ ଲିଖିତ ସମସ୍ତ ଗ୍ରନ୍ଥମାନଙ୍କଠାରୁ ଅତି ପ୍ରାଚୀନ । ବଙ୍ଗ ଦେଶରେ ଯେ ସମୟରେ ମହାଭାରତର ପ୍ରସାର ନ ଥିଲା, ସେ ସମୟରେ ସାରଳା ଦାସଙ୍କ ମହାଭାରତ ଅନୁଦିତ ହୋଇ ସେ ଦେଶରେ ପଠିତ ହେଉଥିଲା, ସେ ମହାଭାରତ ସଂସ୍କୃତ ବ୍ୟାସକୃତ ମହାଭାରତର ଅବିକଳ ଅନୁବାଦ ନୁହେଁ । ସେ ମହାଭାରତ ଲେଖକ ସଂସ୍କୃତ ବିଦ୍ୟା ମୂଳନ୍ତୁ ଜାଣି ନ ଥିଲେ । ସଂସ୍କୃତ ବିଦ୍ୟାରେ ଅପ୍ରବୀଣ ଲୋକ କିପରି ଏ ଭଳି ବିଶାଳ ଗ୍ରନ୍ଥ ଲେଖିଲେ ତାହା ଅତି ଆଶ୍ଚର୍ଯ୍ୟର ବିଷୟ । ଆଶ୍ଚର୍ଯ୍ୟର କଥା କିଛି ନୁହେଁ, ଯାହାଙ୍କ ପ୍ରତି ଦେବଦେବୀ ପ୍ରସନ୍ନ ଏବଂ ଯେ ସ୍ୱୟଂ ପ୍ରତିଭା ସମ୍ପନ୍ନ ସେ ପ୍ରକୃତିର ଗର୍ଭରୁ ଉପାଦାନ ସଂଗ୍ରହ କରି ବିଶାଳ ସାହିତ୍ୟ ରାଜ୍ୟ ନିର୍ମାଣ କରିପାରେ । ମୁସଲମାନ ଧର୍ମର ପ୍ରବର୍ତ୍ତକ ମହମ୍ମଦ, ରାମକୃଷ୍ଣ ଦେବ ମଧ୍ୟ ନିରକ୍ଷର ଥିଲେ । ସେମାନେ ଯେପରି ଧର୍ମ ରାଜ୍ୟରେ ବିପ୍ଳବ ଆଣିପାରିଥିଲେ ସେପରି ଅମର ସେହି ମହାଭାରତକାର ଏହି ଉତ୍କଳଖଣ୍ଡରେ ଏକ ଅପୂର୍ବ ବିପ୍ଳବ ସଂଘଟନ କରି ପାରିଥିଲେ । ସେ ନିଜକୁ କହିଛନ୍ତି :—


Digitized by srujan ka@gmail.com

"ଜନ୍ମେ କୃଷିକାସ୍ତି ନ ଜାଣେ ଶାସ୍ତ୍ରବାର୍ତ୍ତା"

ସେ କଷିକାସ୍ତି ଥିଲେ । ଦୁଃଖର କଥା ଆଜକାଲି କୃଷି-କାସ୍ତିଙ୍କୁ ଶୁଦ୍ର କୁହାଯାଉଛି । କିନ୍ତୁ ସେମାନେ ପ୍ରକୃତରେ ବୈଶ୍ୟ । କାରଣ ମନ୍ୱାଦି ସ୍ମୃତିକାର କହିଅଛନ୍ତି କୃଷି, ଗୋପାଳନ, ଓ ବାଣିଜ୍ୟକାରୀମାନେ ବର୍ଣ୍ଣରେ ବୈଶ୍ୟ । ଅମର ମହାଭାରତକାର ନିଜକୁ ଶୁଦ୍ର ବୋଲି କହି ନିଜର ହୀନତ୍ୱ ପ୍ରତିପାଦନ କରିଅଛନ୍ତି । ଏହା ମହାପୁରୁଷଙ୍କର ଧର୍ମ । ମହାପ୍ରଭୁ ଚୈତନ୍ୟଦେବ କହିଅଛନ୍ତି—

ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦାହରିଃ ।

ଯେଉଁମାନେ ଦେବଦେବୀ ଭକ୍ତ ସେମାନେ ନିଜକୁ ତୃଣଠାରୁ ହୀନ ମନେ କରନ୍ତି । ସେହି ମହାତ୍ମା ଆମଦେଶରେ ମୁନି ଆଖ୍ୟା ପ୍ରାପ୍ତ ହୋଇଛନ୍ତି । ଉତ୍କଳରେ ନାନା ବରିଷ୍ଠ ଲୋକ ନାନା ଆଖ୍ୟା ପ୍ରାପ୍ତ ହୋଇଅଛନ୍ତି । କିନ୍ତୁ ମୁନି ଆଖ୍ୟା ପ୍ରାପ୍ତ ହୋଇଛନ୍ତି ସେହି ମହାମନବ । ତାଙ୍କର ନାମ ସିଦ୍ଧେଶ୍ୱର ପରିଡ଼ା । ସେ ଶାରଳା ଦେବୀଙ୍କର ଐକାନ୍ତିକ ଭକ୍ତ ଥିବାରୁ ନିଜକୁ ଶାରଳାଙ୍କର ଦାସାନୁଦାସ ବୋଲି କହିଅଛନ୍ତି । ପରିଡ଼ା ଏ ଉପାଧି ଆଜକାଲି ଲୋକେ ହୀନ ଦୃଷ୍ଟିରେ ଦେଖନ୍ତି ଏବଂ କେତେକ ପରିଡ଼ା ନିଜକୁ ପରିଜା ଆଖ୍ୟା ଦେଇ ଆତ୍ମସମ୍ମାନ ପ୍ରଦର୍ଶନ କରୁଅଛନ୍ତି । କିନ୍ତୁ 'ପରିଡ଼ା' ପରିରକ୍ଷୀ ଶବ୍ଦର ଅପଭ୍ରଂଶ । ମାଦଳା ପାଞ୍ଜିରେ ପରିରକ୍ଷୀ କଥା ଉଲ୍ଲେଖ ଅଛି, ଏବଂ ଏମାନେ କ୍ଷତ୍ରିୟ । କାଳକ୍ରମେ କେତେକ କ୍ଷତ୍ରିୟ ବୃତ୍ତି ଭ୍ରଷ୍ଟ ହୋଇ କୃଷି ବାଣିଜ୍ୟାଦି ଅବଲମ୍ବନ କରିବା ସମ୍ଭବପର ଏବଂ କେତେକ ଶୁଦ୍ର-ଜାତୀୟ ମଧ୍ୟ

ପରଜ୍ଞା ଉପାଧି ଧାରଣ କରିବାର ଦେଖାଯାଏ । ଖୁବ୍ ସମ୍ଭବତଃ ସାରଳା ଦାସ କ୍ଷତ୍ରିୟ ବଂଶ ସମ୍ଭୂତ କୃଷିବୃତ୍ତି ସମ୍ପନ୍ନ ବ୍ୟକ୍ତି ଥିଲେ । କାରଣ ପୂର୍ବ ଜନ୍ମର ସଂସ୍କାର ନ ଥିଲେ ଏପରି ଅଦ୍ଭୁତ ବିଶାଳ ମହାଭାରତ ଗ୍ରନ୍ଥ ଲେଖିବା ସମ୍ଭବପର ହୋଇ ନ ଥାନ୍ତା ।

ଦୁଃଖର କଥା ଆମ ଦେଶରେ ବହୁତ ଲୋକ ନିଜକୁ ସାହିତ୍ୟିକ ମନେ କରି ଗର୍ବ ଅନୁଭବ କରନ୍ତି । କିନ୍ତୁ ସାରଳା ଦାସଙ୍କ ମହାଭାରତ ପାଠ କରିବା ତାଙ୍କ ପକ୍ଷରେ ସମ୍ଭବପର ହୋଇ ନାହିଁ ବୋଲି ଆମ୍ଭମାନଙ୍କର ବିଶ୍ୱାସ । ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟରେ ଯେ ପାରଦର୍ଶୀ ହେବାକୁ ଚାହିଁବ ସେ ସାରଳ ଦାସଙ୍କ ମହାଭାରତ, ବଳରାମ ଦାସଙ୍କ ରାମାୟଣ ଓ ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ିବ । ଏ ଗ୍ରନ୍ଥମାନ ପାଠ ନ କଲେ ପ୍ରକୃତରେ ଲୋକ ଓଡ଼ିଆ ସାହିତ୍ୟର ପୂର୍ଣ୍ଣପରିଚୟ ପାଇ ପାରିବ ନାହିଁ । ଦୁଃଖର କଥା ଭାରତର ଅତି ପ୍ରାଚୀନ ଅମୂଲ୍ୟ ପ୍ରାକୃତ ଭାଷାରେ ଲିଖିତ ବିଶାଳ ଗ୍ରନ୍ଥର ଏ ପର୍ଯ୍ୟନ୍ତ ଶୁଦ୍ଧ ସଂସ୍କରଣ ସଂକଳିତ ଓ ପ୍ରକାଶିତ ହୋଇନି । ବଜାରରେ ଯେ ଗ୍ରନ୍ଥ ମିଳେ ସେ ଗ୍ରନ୍ଥରେ ସାରଳାଦାସଙ୍କ ଅତିରିକ୍ତ ୮।୧୦ ପଣ ଅଛି । ସାରଳା ଦାସ ନିଜ ମହାଭାରତକୁ ଦାଣ୍ଡି ବୃତ୍ତରେ ଲେଖିଥିଲେ । ସେହି ଦାଣ୍ଡିବୃତ୍ତକୁ ଆମ ଦେଶର ପ୍ରାରମ୍ଭିକ ଲେଖକ କାଟି କୁଟି, ଘଷି କୁଟି, ମାଠି ମୁଠି ଏକ ଅଦ୍ଭୁତ କୌଶଳ ପ୍ରଦର୍ଶନ କରିଛନ୍ତି ।

ସାରଳା ମହାଭାରତରେ ଯେ ଅପୂର୍ବ ଶବ୍ଦାବଳୀ ଅଛି ତାହା ଉଦ୍ଧାର କଲେ ଆମ ଦେଶର ଅନେକ ବିଷୟରେ ଅଭାବ ପରି-ପୂରଣ ହେବ ।

ଧର୍ମଭାବ—

ସାରଳା ଦାସ ଦେବୀଙ୍କର ଭକ୍ତ ହେଲେହେଁ ସୂର୍ଯ୍ୟ, ଶିବ, ବିଷ୍ଣୁ, ଜଗନ୍ନାଥ, ରାମ, ଅଗ୍ନି ପ୍ରଭୃତିଙ୍କୁ ଏକ ଭାବରେ ସ୍ତୁତି କରିଅଛନ୍ତି । ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ ଉତ୍କଳର ଧାର୍ମିକମାନେ ଏକ ଦେଶଦର୍ଶୀ ନ ଥିଲେ । ବୈଦିକ ସୂକ୍ତର ଅର୍ଥ "ଏକଂ ଶତ୍ ବିପ୍ରା ବହୁଧା ବଦନ୍ତି ।" ସେହି ପରମାତ୍ମା ପରମେଶ୍ୱର ଏକ । ତାଙ୍କୁ ପଣ୍ଡିତମାନେ ନାନା ନାମରେ କହିଥାନ୍ତି । ପ୍ରକୃତ ଧାର୍ମିକ ଯେ ସେ ସର୍ବତ୍ର ଭଗବତ୍ ସତ୍ତା ଅନୁଭବ କରେ ଏବଂ ଯେଉଁଠାରେ ମହାଶକ୍ତି ଦେଖେ ତାଙ୍କୁ ଭଗବାନଙ୍କର ପ୍ରତୀକରୂପେ ଗ୍ରହଣ କରେ ଓ ଆତ୍ମପ୍ରସାଦ ଅନୁଭବ କରେ । ଆମ ଉତ୍କଳରେ ଧର୍ମଭାବର ସଂକୀର୍ଣ୍ଣତା ନାହିଁ । କାରଣ ଅନ୍ୟ ଦେଶରେ ଶୈବ, ଶାକ୍ତ, ବୈଷ୍ଣବମାନଙ୍କ ମଧ୍ୟରେ ଘୋର ବିବାଦ ପରିଦୃଷ୍ଟ ହୁଏ । କିନ୍ତୁ ଉତ୍କଳରେ ସେ ଭାବ ସମ୍ଭବେ ନାହିଁ, କାରଣ ଶିବ, ବିଷ୍ଣୁ, ଶକ୍ତି, ଗଣେଶ, ସୂର୍ଯ୍ୟ ଏହି ପଞ୍ଚ ଦେବତାଙ୍କୁ ଉତ୍କଳୀ ଜଗନ୍ନାଥଙ୍କ ରୂପରେ ଦେଖେ ଏବଂ ସେପରି ଦେଖି ସେ ପୂଜା ପ୍ରବର୍ତ୍ତନ କରିଛି ଏବଂ ସେହି ପୂଜା ପ୍ରବର୍ତ୍ତନ କରାଇ ଭାରତ ଜଗତରେ ସମ୍ମାନୀୟ ସ୍ଥାନ ପାଇପାରିଛି । ତହୁଁ ଭାରତର ଅନ୍ୟାନ୍ୟ ପଞ୍ଚଦେବତା ଉପାସକମାନେ ଜଗନ୍ନାଥ ଦେବଙ୍କ ଶରୀରରେ ନିଜ ନିଜର ଦେବତାର ପ୍ରକାଶ ଦେଖି ପାରିଛନ୍ତି । ସେହି ସାରଳା ଦାସ ଜଗନ୍ନାଥଙ୍କୁ ବୁଦ୍ଧ ଆଖ୍ୟା ପ୍ରଦାନ କରିଅଛନ୍ତି, ଏବଂ ଉତ୍କଳର ଅନେକ ଭକ୍ତ ଓ କବି ଜଗନ୍ନାଥଙ୍କୁ ବୁଦ୍ଧ ମୂର୍ତ୍ତି ରୂପେ ଦେଖି ଅଛନ୍ତି । ଅବଶ୍ୟ କେତେକ ଜଗନ୍ନାଥଙ୍କୁ ଶାକ୍ୟସିଂହ ବୁଦ୍ଧ ବୋଲି ସ୍ୱୀକାର କରନ୍ତି ନାହିଁ । ସେହି ପରଂବ୍ରହ୍ମ ଶୁଦ୍ଧ ବୁଦ୍ଧ ନିତ୍ୟ ବୋଲି କହନ୍ତି । ଏ ବିଷୟରେ ମଧ୍ୟ ଜଗନ୍ନାଥ ଦାସ

ପ୍ରକାରାନ୍ତରେ ବୁଦ୍ଧଙ୍କୁ ଜଗନ୍ନାଥ ବୋଲି ସ୍ୱୀକାର କରି ଏବଂ ବୁଦ୍ଧଙ୍କୁ ଶ୍ରେଷ୍ଠ ଅବତାର ମଣି ଏକାଦଶସ୍କନ୍ଧରେ କହିଛନ୍ତି ।

"ପ୍ରବୁଦ୍ଧ ବୁଦ୍ଧ ଅବତାରେ
ଜ୍ଞାନ ବିସ୍ତାରେ ଏ ସଂସାରେ ।"

ବୌଦ୍ଧ ଧର୍ମ ଓ ଜୈନ ଧର୍ମ ସ୍ୱତନ୍ତ୍ର ଧର୍ମ ନୁହଁନ୍ତି । ତାହା ବ୍ରାହ୍ମଣ୍ୟ ଧର୍ମର ସନ୍ତାନ । ପୁତ୍ର ପିତାଠାରୁ ପୃଥକ ହୋଇ ନିଜର ପ୍ରାପ୍ୟ ଗ୍ରହଣପୂର୍ବକ ସ୍ୱଜୀବିତାବସ୍ଥାରେ ଯାହା କିଛି ଅର୍ଜନ କରି ନିଜ ସଙ୍ଗେ ଯୋଗ କରି ଯେ ସମ୍ପତ୍ତିର ଅଧିକାରୀ ହୁଏ, ସେହିପରି ବୁଦ୍ଧ ଓ ମହାବୀର ବ୍ରାହ୍ମଣ୍ୟଧର୍ମର କେତେକ ବିଷୟ ଗ୍ରହଣ କରି ଏବଂ ନିଜର ମତାନୁସାରେ କେତେକ ଯୋଗ କରି ନୂତନ ପ୍ରଥାର ପ୍ରବର୍ତ୍ତନ କଲେ । ଆମର ଉତ୍କଳ ଖଣ୍ଡ ବୌଦ୍ଧ ଓ ଜୈନ ଧର୍ମର ଲୀଳାସ୍ଥଳୀ ଥିଲା । ତହୁଁ ଜୈନ ଧର୍ମ, ବୌଦ୍ଧ ଧର୍ମ ଓ ବ୍ରାହ୍ମଣ୍ୟଧର୍ମ ମଧ୍ୟରେ ଆଦାନ ପ୍ରଦାନ ହେବା ସୁନିଶ୍ଚିତ । ଶିବଙ୍କର ମୂର୍ତ୍ତି ବହୁ ଅଂଶରେ ବୁଦ୍ଧଙ୍କ ମୂର୍ତ୍ତି ଦ୍ୱାରା ପ୍ରଭାବିତ ଏବଂ କାଳୀ ମୂର୍ତ୍ତି ବୌଦ୍ଧ ମୂର୍ତ୍ତି ବୋଲି ବର୍ତ୍ତମାନ ପ୍ରମାଣିତ ହେଲାଣି ।

ଶାକ୍ତ ଓ ଶୈବ ଧର୍ମରେ ବୌଦ୍ଧ ଧର୍ମର ପ୍ରଭାବ ପରି ଲକ୍ଷିତ ହୁଏ । ବୈଷ୍ଣବ ଧର୍ମରେ ମଧ୍ୟ ବୌଦ୍ଧ ଧର୍ମର ପ୍ରଭାବ ସୁସ୍ପଷ୍ଟ ପରିଦୃଷ୍ଟ । ବୌଦ୍ଧଧର୍ମର ମହାଯାନ ଶାଖା ବଜ୍ରଯାନ ପନ୍ଥୀ । ମହାଯାନର ଚର୍ଯ୍ୟାରେ ଅନ୍ତରଙ୍ଗ ଓ ବହିରଙ୍ଗ ଭାବ ଅଛି । ବହିରଙ୍ଗ କ୍ରିୟା କଳାପ ଅତି ଖରାପ । ସେହି ବହିରଙ୍ଗ କ୍ରିୟା କଳାପରେ ଲୋକେ ପରସ୍ତ୍ରୀ ରମଣ କରିବାରେ ଏବଂ ପର ପୁରୁଷ ପରସ୍ତ୍ରୀ, ଓ ପରସ୍ତ୍ରୀ ପର ପୁରୁଷ ରମଣ କରିବାରେ କୁଣ୍ଠା ବୋଧ କରେ ନାହିଁ । ତହୁଁ ଏହି ପରକୀୟା ପ୍ରୀତିରୁ ଉନ୍ନତ

ଭାବରେ ଅବସ୍ଥାପିତ କରିବାକୁ ଯାଇ ମହାପ୍ରାଣ ଧାର୍ମିକ ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କୁ ପର ପୁରୁଷ ଓ ଜୀବକୁ ପରସ୍ତ୍ରୀ ରୂପେ ପରିକଳ୍ପନା କରି ଗୋପୀକୃଷ୍ଣଙ୍କର ଲୀଳାମୂଳକ ଗ୍ରନ୍ଥ ପ୍ରଣୟନ କଲେ । ଏହି ପରକୀୟା ପ୍ରୀତିର ପ୍ରବର୍ତ୍ତନରେ ଦେଶର ମଙ୍ଗଳ ସାଧିତ ହେଲ । ଏହି ସହଜଯାନର ପ୍ରଭାବ ଅମ୍ଭେମାନେ ସାରଳାଦାସଙ୍କର ଗ୍ରନ୍ଥରେ ଦେଖିବାକୁ ପାଉ । ସାରଳା ଦାସଙ୍କ ସୃଷ୍ଟି ପ୍ରକ୍ରିୟା ସହଜଯାନର ମତାନୁମୋଦିତ ଏବଂ ଦ୍ରୋଣାଦିଙ୍କର ଜନ୍ମ ବୃତ୍ତାନ୍ତ, ବୃଦ୍ଧା କୁନ୍ତୀଙ୍କର କାମ ପ୍ରବୃତ୍ତି, ଯୁଧିଷ୍ଠିରଙ୍କର ଯାଜପୁରରେ ପୋହାଣୀ କନ୍ୟାର ବିବାହାଦିରେ ସେହି ସହଜ-ଯାନର ପ୍ରଭାବ ପରିଲକ୍ଷିତ ହୁଏ । ସଂସ୍କୃତ ମହାଭାରତ ମୂଳରେ ଲିଖିତ ଅଛି ଯେ ମହାଭାରତ ଅନେକ ସଂସ୍କରଣ ଲିଖିତ ହୋଇଥିଲ । ମର୍ତ୍ତ୍ୟରେ ଲକ୍ଷେ ଶ୍ଳୋକ ଗନ୍ଧର୍ବ ଯକ୍ଷ ଓ ଦେବାତାଙ୍କ ନିମିତ୍ତ ୫।୧୦ ଲକ୍ଷ ପ୍ରଭୃତିରେ ମହାଭାରତ ଲିଖିତ ହୋଇ ଶେଷରେ ଲେକମାନଙ୍କରେ ପ୍ରଚଳିତ ହୋଇଥିଲ । ଏଥିରୁ ପ୍ରତୀତ ହୁଏ ମହାଭାରତର ଭିନ୍ନ ଭିନ୍ନ ସଂସ୍କରଣ ସ୍ଥଳ ବିଶେଷମାନଙ୍କରେ ପ୍ରଚଳିତ ହୋଇଥିଲ । ବର୍ତ୍ତମାନ ଅମ୍ଭେମାନେ ଶୁଣିବାକୁ ପାଉଁ ପ୍ରଚଳିତ ସାରଳା ମହାଭାରତରେ କେତେକ ଅଭୁତ ଉପାଦାନମାନ ଅଛି ଯାହା କି ଅମ୍ଭେମାନେ ସଂସ୍କୃତ ମହାଭାରତରେ ଦେଖିବାକୁ ପାଉ ନାହୁଁ । ସାଧାରଣତଃ ଅମ୍ଭେମାନେ ମୁନିଙ୍କ ଏହା କଳ୍ପନା ପ୍ରସୂତ ବୋଲି ଧରିଥାଉ । କିନ୍ତୁ ଅନ୍ୟାନ୍ୟ ସ୍ଥାନମାନଙ୍କର ମହାଭାରତ ସହିତ ସାରଳା ମହାଭାରତ ତୁଳନା କରି ପାଠ କଲେ କେତେକ ଉପାଖ୍ୟାନ-ମାନଙ୍କର ସମତା ମିଳିପାରେ । ଦୁଃଖର କଥା ଅମ୍ଭେ ଏ ବିଷୟରେ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ନ ହେଇ ସେ

ସବୁକୁ କାଳ୍ପନିକ କହିବାକୁ ବାଧ । ସାରଳା ଦାସ ବ୍ୟାସଙ୍କର ମାତା ସତ୍ୟବତୀଙ୍କୁ ଶାନ୍ତନୁଙ୍କର ସ୍ତ୍ରୀ ନ କରାଇ ପରାଶରଙ୍କର ସ୍ତ୍ରୀ ରୂପରେ ରଖି ଅଛନ୍ତି । କିନ୍ତୁ ସଂସ୍କୃତ ମହାଭାରତରେ ସତ୍ୟବତୀ ପରକାଳରେ ଶାନ୍ତନୁଙ୍କୁ ବିବାହ କରିଥିଲେ ଏବଂ ସେହି ସତ୍ୟବତୀଙ୍କ ଗର୍ଭରୁ ଶାନ୍ତନୁଙ୍କ ଔରସରୁ ଚିତ୍ରାଙ୍ଗଦ ଓ ବିଚିତ୍ର ବୀର୍ଯ୍ୟ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ଗଙ୍ଗାଙ୍କର ଶାନ୍ତନୁଙ୍କଠାରୁ ଭୀଷ୍ମଙ୍କୁ ନେଇ ଅନ୍ତର୍ହିତ ହେବାର ପରକାଳରୁ ଶାନ୍ତନୁ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଅନ୍ୟ ଦାର ପରିଗ୍ରହ କରି ନ ଥିଲେ । କୌଣସି ସ୍ତ୍ରୀ ଗର୍ଭରୁ ଜାତ ନ ହୋଇ ଶାନ୍ତନୁଙ୍କ ଚିତ୍ର ପ୍ରତିମା ଆଲିଙ୍ଗନରୁ ସ୍ଖଳିତ ଶୁକ୍ରରୁ ସଇନ୍ଦ୍ରୀ ପୁତ୍ର ଚିତ୍ରାଙ୍ଗଦ ବିଚିତ୍ରବୀର୍ଯ୍ୟ ଜାତ ହୋଇଥିଲେ ।

ଖଳକାରର ଜନ୍ମ ସେ ଅଦ୍ଭୁତ ପ୍ରକାରରେ କରାଇ ଅଛନ୍ତି । ଦୂତୀଙ୍କ ସହ କୃଷ୍ଣଙ୍କର ଗୋପନ ପ୍ରଣୟରୁ ଜାତ ଯେ ପୁତ୍ର ସେହି ଖଳକାର ହୋଇ ବିଦୁରଙ୍କ ଆଦେଶରେ ଜତୁ ଗୃହରୁ ସିନ୍ଧୁଗାତ ନଦୀ ପର୍ଯ୍ୟନ୍ତ ଖୋଳି ଦେଇଥିଲା । କୁମ୍ଭୀବିପୁରର ନଦୀ ଗର୍ଭରେ ଅବସ୍ଥିତି ଏବଂ ମାତା ଓ ଭ୍ରାତାମାନଙ୍କୁ ଦୁର୍ମେଦେନର କୁମ୍ଭୀର ଗର୍ଭରେ ଅର୍ପଣ ପ୍ରସ୍ତାବ ଓ ପରେ କୁମ୍ଭୀର କନ୍ୟାତ୍ୱ ସ୍ୱୀକାର କରି କୁମ୍ଭୀରକୁ ନାଶ କରିବା ଓ ଅରଣ୍ୟରେ ଭ୍ରାତାମାନଙ୍କ ସହ ଯୋଗଦେବା, ହିଡ଼ମ୍ବାସୁର ବଧ ପରେ ଭୀମର ଶିବ ପୁରରେ ରାଜା ହେବା ଏବଂ ଚଣ୍ଡାଳମାନଙ୍କୁ ପରାସ୍ତ କରିବା,—ପାତାଳ-ପୁରରେ ନାଗ କନ୍ୟାକୁ ବିବାହ କରି ପୁତ୍ର ଉତ୍ପାଦନ କରିବା, ଗାନ୍ଧାରୀଙ୍କର ବିବାହ ପ୍ରସ୍ତାବମାନେ ବରପାତ୍ରମାନଙ୍କର ମୃତ୍ୟୁ ଘଟିବା ଏବଂ ଧୃତରାଷ୍ଟ୍ରଙ୍କର ବିବାହ ପ୍ରସ୍ତାବରେ କନ୍ୟାମାନଙ୍କର ମୃତ୍ୟୁ ଘଟିବା ଯୋଗୁଁ— ବ୍ୟାସଙ୍କ

ଅଦେଶରେ ସୁବଳ ରାଜାଙ୍କର ସାହାଡ଼ା ଗଛକୁ ଗାନ୍ଧାରୀଙ୍କ ବିବାହ କରିବା ଓ ସାହାଡ଼ାଗଛ ଜଳିଯିବା ଏବଂ ତତ୍‌ପରେ ଧୃତରାଷ୍ଟ୍ରଙ୍କ ବିବାହ କରାଇବା, ସଭାରେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ଧର୍ମ ଓ ପବନ ପୁତ୍ରବାଦ କହିବାରେ ଭୀମର କ୍ରୋଧ ଏବଂ କୃଷ୍ଣଙ୍କର ନିର୍ଦ୍ଦେଶରେ ଦୁର୍ଯ୍ୟୋଧନକୁ ଭୀମର ଗୋଲକପୁତ୍ର କହିବା ଏବଂ ଦୁର୍ଯ୍ୟୋଧନର ଗୋଲକପୁତ୍ର ଅଖ୍ୟାର ମାତାଙ୍କଠାରୁ ଶ୍ରବଣ ବୁଝି ନିଜର ମାତାମହ ଏବଂ ଶହେ ମାମୁଁଙ୍କ ବନ୍ଦୀଶାଳରେ ଭର୍ତ୍ତି କରାଇ ଅଳ୍ପ ଅହାର ଯୋଗାଇବାରେ କେବଳ ଶକୁନିଙ୍କ ଜୀବନରକ୍ଷା ହେବା—କୌଣସି ବିଶେଷ କାରଣ ବଶତଃ ଶକୁନିର ବୁଦ୍ଧି ବିଚକ୍ଷଣତା ବିଷୟ ଜାଣିପାରି ବନ୍ଦୀଗୃହରୁ ତାଙ୍କ ଉଦ୍ଧାର କରି ନିଜର ମନ୍ତ୍ରୀ କରିବା ପ୍ରଭୃତି ବର୍ଣ୍ଣନା ସାରଳାଦାସଙ୍କ କବି କଳ୍ପନା ସମ୍ଭୂତ । ଶକୁନିର ଅପାତତଃ ଦୁର୍ଯ୍ୟୋଧନର ହିତାକାଙ୍‌କ୍ଷୀ ହୋଇ ତାହାର ବଂଶକୁ ନାଶ କରିବା ଯେ ସୈତାନ ଚରିତ୍ରର ଚିତ୍ରଣ ସାରଳାମୁନି କରି ଅଛନ୍ତି ତାହା ତୁଳନାରେ ଜଗତ ବିଖ୍ୟାତ ସେକ୍‌ସପିଅରଙ୍କ ସୈତାନ ଚରିତ "ଇଅଗୋ" କିଛି ନୁହେଁ କହିଲେ ଚଳେ ।

ଖାଣ୍ଡବ ବନରେ ନବଗୁଂଜରର ଅବିର୍ଭାବ, ଦ୍ରୋଣ ଏବଂ କର୍ଣ୍ଣଙ୍କ ହସ୍ତରୁ ଅର୍ଜ୍ଜୁନର ରଥ ରକ୍ଷା କରିବା ନିମିତ୍ତ ହନୁମାନର ରଥକୁ ପାତାଳକୁ ଗୃପିବା, ବେଲ୍ଲବଳୀର ଏକ ଦିନରେ କୌରବ ସୈନ୍ୟଙ୍କ ନାଶ କରିବା ପ୍ରସ୍ତାବ ଶ୍ରବଣ କରି କୃଷ୍ଣଚନ୍ଦ୍ରଙ୍କ ଦ୍ୱାରା ବେଲ୍ଲବଳୀର ଶିରଚ୍ଛେଦ ହୋଇ ସ୍ତମ୍ଭଉପରେ ସ୍ଥାପିତ ହେବା, ନକୁଳ ଓ ଅର୍ଜ୍ଜୁନଙ୍କ ଦ୍ୱାରା ପ୍ରସଙ୍ଗ ବିଶେଷମାନଙ୍କରେ ପୃଥିବୀକୁ ସ୍ୱ ଅସ୍ତ୍ରମାନଙ୍କରେ ତୋଳି ରଖିବା, ଦୁର୍ଯ୍ୟୋଧନର ରକ୍ତ ନଦୀ ସନ୍ତରଣ କରିବା—ନଳ ରାଜାଙ୍କର ନେପାଳ ଜୟ କରିବା, ଯୁଧିଷ୍ଠିରଙ୍କର


Digitized by srujan ka@gmail.com

ସୋହାଣୀ କନ୍ୟାଙ୍କୁ ବିବାହ କରିବା ଏବଂ ଅର୍ଜୁନର କଳ-କଳାରେ କଳଙ୍କୁ ବାନ୍ଧ ରଖିବା ଇତ୍ୟାଦ ଅଦ୍ଭୁତ ଉପାଖ୍ୟାନ ମୁନିଙ୍କର ମହାକଳ୍ପନା ପ୍ରସୂତ । ପୁନଶ୍ଚ ସାରଳା ଦାସଙ୍କର ଜ୍ୟୋତିଷ ଜ୍ଞାନ, ଗୋ-ଚିକିତ୍ସା ପ୍ରଭୃତି ବିଦ୍ୟାରେ ଜ୍ଞାନର ଯେ ସଂକେତ ପାଉ ତାହା ତାଙ୍କର ଅଦ୍ଭୁତ ସଂଗ୍ରାହିକା ଶକ୍ତି ପ୍ରସୂତ । ତାଙ୍କର ବିଲଙ୍କା ରାମାୟଣ ଓ ଚଣ୍ଡୀପୁରାଣ ଯୁଦ୍ଧବର୍ଣ୍ଣନା ମାନଙ୍କରେ ବିଶେଷତଃ ମହାଭାରତରେ ବଳରାମ ଏବଂ ମହାଦେବଙ୍କ ଯୁଦ୍ଧ ବର୍ଣ୍ଣନାରେ ସେ ଶବ୍ଦମାନଙ୍କର ଏକ କୁହୁକ ପ୍ରଦର୍ଶନ କରି ଅଛନ୍ତି ।

ସେ ସ୍ତ୍ରୀ ଚରିତ୍ର ଯାହା ବର୍ଣ୍ଣନା କରିଅଛନ୍ତି ତାହା ବାସ୍ତବ ଓ ତତ୍କାଳୀନ ସମାଜର ଜୀବନ୍ତ ଆଲେଖ୍ୟ । ସାରଳା ଦାସ କେଉଁ କାଳର ଲୋକ ଥିଲେ ସେ ବିଷୟରେ ପଦେ ଅଧେ କହିବା ସମୀଚୀନ ମନେକରୁ । ଯେଉଁମାନେ ସାରଳା ଦାସଙ୍କ ମହାଭାରତ ମୂଳ ପୋଥି ପଢ଼ିଛନ୍ତି ସେମାନେ ଆମ୍ଭମାନଙ୍କ ସହ ଏକମତ ହେବେ ଯେ, ତାଙ୍କ ଭାଷା ସରଳ, ସହଜ ଓ ପ୍ରାକୃତିକ । ତାହା ସଂସ୍କୃତ ମୂର୍ଚ୍ଛିତ ନୁହେଁ ଏବଂ ତାହା ପ୍ରାଚୀନ ଉତ୍କଳର ପ୍ରଚଳିତ ପ୍ରାକୃତର ବିକାଶ-ସମ୍ଭୂତ । ଅବଶ୍ୟ ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ ପରେ ସଂସ୍କୃତ ଭାଷାର ପ୍ରବଳ ପରିବର୍ତ୍ତନ ପରେ ଉତ୍କଳ ଭାଷାରେ କେତେକାଂଶରେ ପ୍ରଭାବ ପଡ଼ିଥିବା ସମ୍ଭବ ପର । କିନ୍ତୁ ସାରଳା ଦାସଙ୍କ ଭାଷାରେ ସେତେ ପ୍ରଭାବ ଦେଖିବାକୁ ପାଉନା । ପ୍ରାକୃତ ତୁଲ୍ୟ ଲୋକଙ୍କର ନାମ ଯଥା—ଯୁଯେଷ୍ଟି, କୋଏନ୍ତା ଏବଂ ଅନ୍ୟାନ୍ୟ ଶବ୍ଦ ଛୁକ୍କୁ, ମୁକ୍କୁ, କିସବୋ ପ୍ରଭୃତି ଶବ୍ଦ ଯାହା ସାରଳା ଦାସଙ୍କ ମହାଭାରତରେ ଦେଖୁ ତାହା ବଳରାମ ଦାସଙ୍କ ରାମାୟଣରେ ଦେଖିବାକୁ ପାଉନା । ଯେଉଁମାନେ ସାରଳା

ଦାସଙ୍କୁ କପିଳେନ୍ଦ୍ର ଦେବଙ୍କ ସମସାମୟିକ ବୋଲି କହନ୍ତି ସେମାନଙ୍କର ବୁଝିବା ଉଚିତ ଯେ, ବଳରାମ ଦାସ ପୁରୁଷୋତ୍ତମ ଦେବଙ୍କ ଅନ୍ତିମ କାଳରେ ଓ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱର ପ୍ରାକ୍ କାଳରେ ରାମାୟଣ ଲେଖା ଶେଷ କରିଥିଲେ । ତେଣୁ ସାରଳା ଦାସଙ୍କ ଓ ବଳରାମ ଦାସଙ୍କ ସମୟର ବ୍ୟବଧାନ ୪୦।୫୦ ବର୍ଷ ଭିତରେ ପଡ଼ୁଅଛି । ୪୦।୫୦ ବର୍ଷ ମଧ୍ୟରେ ଭାଷାର ଏପରି ପାର୍ଥକ୍ୟ ଲକ୍ଷିତ ହେବା ଅସମ୍ଭବ । ଭାଷା ବଳରାମ ଦାସଙ୍କ କାଳରେ ଏକ ରକମ ସାହିତ୍ୟିକ ଛଟା ତଥା ସଂସ୍କୃତ ମୂର୍ଚ୍ଛିତ ଭାବ ପ୍ରାପ୍ତ ହୋଇଥିଲା । ଅମ୍ଭମାନଙ୍କ ମତରେ ଅଭ୍ୟନ୍ତରୀଣ ପ୍ରମାଣ ବଳରୁ ସାରଳା ଦାସ ଓ ବଳରାମ ଦାସଙ୍କ ମଧ୍ୟରେ ସମୟର ବ୍ୟବଧାନ ପ୍ରାୟ ଏକଶତ ବର୍ଷରୁ ଊର୍ଦ୍ଧ୍ୱ । ସାରଳା ଦାସ କପିଳ ନରସିଂହ ଦେବଙ୍କ ସମସାମୟିକ । କପିଳ ନରସିଂହ ଦେବ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମରେ ରାଜତ୍ୱ କରୁଥିଲେ ଏବଂ ଦୁର୍ଯ୍ୟୋଧନ ସ୍ୱୟମ୍ବର କାଳ ସାରଳା ଦାସ ଯାହା ନିର୍ଦ୍ଦେଶ କରି ଅଛନ୍ତି ତାହା କପିଳ ନରସିଂହ ଦେବଙ୍କ ଅଭିଷେକ କାଳ ସହ ସମାନ ଘଟୁଅଛି ଏବଂ ସେ ନିଜ ଗ୍ରନ୍ଥରେ ନରସିଂହ ଦେବଙ୍କୁ ଲକ୍ଷ୍ୟକରି କପିଳେଶ୍ୱର ଦେବ ବୋଲି କହି ଅଛନ୍ତି ।

କେତେକ ସମାଲୋଚକ କହନ୍ତି ଯେ, ସାରଳା ଦାସ ସଂସ୍କୃତ ମହାଭାରତର ଶାନ୍ତି ପର୍ବ ଓ ଅନୁଶାସନ ପର୍ବ ନିଜ ମହାଭାରତରେ ସ୍ଥାନ ନ ଦେଇ ବଡ଼ ଅଭାବ ରଖି ଯାଇଅଛନ୍ତି । ତାଙ୍କ ନ ଦେବାର କାରଣ ସେ ସଂସ୍କୃତ ମହାଭାରତ ପାଠକରି ନ ଥିଲେ ଏବଂ ସାଧାରଣତଃ ବୀରପୁରୁଷ ମାନଙ୍କର ଜୀବନୀ ଚରିତ ବର୍ଣ୍ଣନା ଦ୍ୱାରା ସାଧାରଣ ଲୋକଙ୍କୁ ଧର୍ମ ପଥରେ ଓ ନ୍ୟାୟ ପଥରେ ଚାଳିତ କରିବା ସହଜ ପନ୍ଥା ମନେକରି ସେ ସବୁ ତ୍ୟାଗ

ବିଷୟ ଓ ଧର୍ମୀ ଧର୍ମ ବିଷୟ ପରିହାର କରି ଅଛନ୍ତି । ପରିଶେଷରେ ଆମ୍ଭମାନଙ୍କର ଏତିକି କର୍ତ୍ତବ୍ୟ ଯେ ମାନବ ଜୀବନର ପରିଶୀଳନାରି ନାନାବିଧ ଉପଯୋଗୀ ବାର୍ତ୍ତା ସେ ନିଜର ପ୍ରତିଭା ବଳରେ ଦିବ୍ୟ ଜନଙ୍କ ମୁଖରୁ ଓ ପ୍ରକୃତି ଗର୍ଭରୁ ଗ୍ରହଣ କରି ଦେଶବାସୀଙ୍କୁ ଏକ ଅମୂଲ୍ୟ ଜ୍ଞାନଶାଳ ଗ୍ରନ୍ଥ ପ୍ରଦାନ କରି ଅଛନ୍ତି ଏବଂ ଏହା କରିବା ଦ୍ୱାରା ସେ ପରବର୍ତ୍ତୀ ଗୋପୀଦାସ, ବିଶ୍ୱମ୍ଭର ଦାସ, ପିତାମ୍ବର ଦାସ ପ୍ରମୁଖ ପ୍ରାଚୀନ କାଳର ଅନେକ କୃତୀ କବି ଓ ଲେଖକଙ୍କୁ ଓ ଆଧୁନିକ ଯୁଗର ରାଧାନାଥଙ୍କୁ ପ୍ରଭାବିତ କରି ନିଜର ଦିବ୍ୟ ମହତ୍ତ୍ୱର ପରିଚୟ ଦେଇଛନ୍ତି ।

---

# ସାରଳା ଦାସଙ୍କ ଧର୍ମ

ପଣ୍ଡିତ ନୀଳକଣ୍ଠ ଦାସ

ଶ୍ରୀ ସୁରେନ୍ଦ୍ର ମହାନ୍ତି ଏମ୍. ପି. କଥା ପ୍ରସଙ୍ଗରେ ସେଦିନ କହୁଥିଲେ ଦୁଇଜଣ ଆମେରିକାନ୍ ଯୁବକଙ୍କ ସଙ୍ଗେ ଦିଲ୍ଲୀଠାରେ ତାଙ୍କର ଦେଖା ଓ ଆଳାପ ହୋଇଥିଲା । ସେ ଦୁଇଜଣଯାକ ଭାରତ ପାର୍ଲିମେଣ୍ଟ ଦେଖି କଣ ଗୋଟିଏ ଆଲୋଚନା ମୂଳକ ଗ୍ରନ୍ଥ (thesis) ଲେଖୁଛନ୍ତି । ତହିଁ ସଙ୍ଗେ ଭାରତୀୟ ଇତିହାସ, ଧର୍ମ, ଓ ଅଗୃବ ବ୍ୟବହାର ଦେଖି କଳନା କରିବା ପାଇଁ ଭାରତର ସ୍ଥାନମାନ ମଧ୍ୟ ବୁଲୁଛନ୍ତି । ଓଡ଼ିଶାର ମନ୍ଦିରମାନଙ୍କରେ ସ୍ଥାପତ୍ୟ କଳା ସମ୍ବନ୍ଧରେ ଆଲୋଚନା କରୁ କରୁ ସେ କହିଲେ ବାତ୍ସ୍ୟାୟନଙ୍କର ଯେଉଁ କାମସୂତ୍ର ଅଛି ତାହା ନିଶ୍ଚୟ କୌଣସି ଓଡ଼ିଆଙ୍କ ଲେଖା ହୋଇଥିବ । କାହିଁକି ନା ଓଡ଼ିଶା ସ୍ଥାପତ୍ୟ କଳା ଦେଖିଲେ ସ୍ପଷ୍ଟ ମନେ ହେଉଛି ଓଡ଼ିଆମାନେ କାମକଳାରେ ଅତ୍ୟନ୍ତ ପଟୁ ଓ ପ୍ରବୀଣ । ଏହି କାମକଳାକୁ ପୁଣି ସେମାନେ ବହୁ ପ୍ରକାରରେ ଓ ନରନାରୀର ଅଙ୍ଗ ବିନ୍ୟାସର ବହୁ ଭଙ୍ଗୀରେ ଏପରିକି ଅନ୍ୟକୁ ଆଶ୍ଚର୍ଯ୍ୟ ଲାଗିଲାଭଳି, ଅସମ୍ଭବ ଲାଗିଲା ଭଳି ଆଚରଣ କରି ପାରନ୍ତି ଓ କରନ୍ତି । ନରନାରୀ ସଙ୍ଗମରେ ଏଭଳି ବିଦ୍ୟା ଓ ଆଚରଣ ଅନ୍ୟତ୍ର ଦେଖାଯାଏ ନାହିଁ । ଓଡ଼ିଆଙ୍କର ଏ ବିଶେଷତ୍ୱ ତାଙ୍କ ଜାଣିବାରେ ଅଦ୍ୱିତୀୟ । ସୁରେନ୍ଦ୍ରବାବୁ କହୁଥିଲେ ଏଥିରେ ସେ ଆଉ ଉତ୍ତର ଦେଇ ବୁଝାଇବେ କଣ ?

ଓଡ଼ିଆଙ୍କ ବିଶେଷତ୍ୱ ଲୁହାଯାଉଥିବା ଭଳି ଏ ସମସ୍ତ ମନ୍ତବ୍ୟଟି ସୁରେନ୍ଦ୍ର ବାବୁଙ୍କୁ ନୀରବରେ ଗର୍ଭସ୍ଥ କରିବାକୁ ହୋଇଥିଲା ।

ଏ ସବୁର ମୂଳ ହେଉଛି ପୂର୍ବ ଭାରତର ତନ୍ତ୍ରସାଧନା, ସେ ତନ୍ତ୍ର ହେଉଛି, ବୁଦ୍ଧ ଧର୍ମ ନାମରେ ନାମିତ ବଜ୍ରଯାନତନ୍ତ୍ର, ସହଜଯାନତନ୍ତ୍ର ତଥା ତହିଁ ସଙ୍ଗେ ସମାନ ଓ ବହୁ ପରିମାଣରେ ତହିଁରୁ ଉଦ୍ଭୂତ ହିନ୍ଦୁତନ୍ତ୍ର, ପୁଣି ସମ୍ପୂର୍ଣ୍ଣ ରୂପେ ବାହାରିଥିବା ସହଜିଆ ବୈଷ୍ଣବ ବା ଗୌଡ଼ୀୟ ବୈଷ୍ଣବଙ୍କ ପରକୀୟା ଲୀଳା, ଶିବ ଶକ୍ତ ଓ ରାଧାକୃଷ୍ଣଙ୍କର ଯୁଗନଦ୍ଧ ଓ ଯୁଗଳରୂପଠାରୁ ନଗ୍ନ କାମୋନ୍ମତ୍ତ ଶିବଙ୍କ ଉପରେ ନଗ୍ନକାଳୀ ଛିଡ଼ା ହୋଇ ଅସୁରଙ୍କୁ ଭୟ ଦେଖାଇବା ଓ ଲୁଗା ଧେନି କଦମ୍ବ ଗଛ ଉପରେ ବସି ଯମୁନାରେ ଗାଧୋଉଥିବା ନଗ୍ନ ଗୋପୀମାନଙ୍କୁ ଧେନି କୃଷ୍ଣଙ୍କ ରହସ୍ୟ ପ୍ରଭୃତି ସବୁ ଏହି ସଭ୍ୟତାର ସଙ୍କେତ ।

ନାନାସ୍ଥଳରେ ମୁଁ କହିଛି ଏହା ମୂଳତଃ ଜୈନଦେବ ଜଗନ୍ନାଥ ସେବୀ ଓଡ଼ିଆ, ବ୍ରହ୍ମଚର୍ଯ୍ୟମୂଳକ ସାଧନାରୁ ସାକ୍ଷାତ ବାହାରି ନାହିଁ । କିନ୍ତୁ ବାହାରେ ଦେଖିବାକୁ ଏହି ଧର୍ମ ଏକ ଅଭ୍ୟାସ, ଏଇ ଅଙ୍ଗର ଓଡ଼ିଆଙ୍କର ବୋଲି ଯେ କୌଣସି ଲୋକ କହିବ । ତାହାଁ ବିନା ଅନ୍ୟାନ୍ୟ ଏସବୁ କଳାର କୌଣସି ନିଦର୍ଶନ ଏବେ ବିଶେଷ ମିଳେ ନାହିଁ । କିମ୍ବା ଓଡ଼ିଶାରେ ଥିବ ମନ୍ଦିରମାନଙ୍କ ପରି ଅନ୍ୟାନ୍ୟ ପ୍ରାଚୀନ କୀର୍ତ୍ତି ସବୁ ନାହିଁ । ନାଳନ୍ଦ ଓ ବିକ୍ରମଶିଳା ବିହାରରେ ଏହି ସବୁ ଚର୍ଯ୍ୟା ଧେନି ଯେଉଁ ଶରୀର ସାଧନାର ଚର୍ଚ୍ଚା ହେଉଥିଲା ତାହାର ସାହିତ୍ୟରେ କେତେକ ଆଭାସ ମିଳିଲେ ମଧ୍ୟ ସ୍ଥାପତ୍ୟରେ ବିଶେଷ ସଙ୍କେତ ଥିଲାପରି ଜଣାପଡ଼ୁ ନାହିଁ । ନେପାଳ ଓ ତିବ୍ବତରେ କିଛି କେତେ ଅଛି । ସ୍ଥାପତ୍ୟରେ ଏହାର ପ୍ରକାଶ କିଛି କେତେ ଅଛି ତାହା କହି

ହେଉ ନାହିଁ । ପୃଷ୍ଠିରେ ବିହାର ଠିକ୍ କେଉଁଠାରେ ଥିଲା ଓ ସେଠି ଏ ବିଦ୍ୟା ଠିକ୍ କେବେ ପଶିଥିଲା ତା' ମଧ୍ୟ କହି ପାରିବାଭଳି ଐତିହାସିକ ବା ସ୍ଥାପତିକ ଅବଶେଷ ଓ ନିଦର୍ଶନମାନ ମିଳି ନାହିଁ । ବନାରସର ନେପାଳୀ ମନ୍ଦିର ଓ ମଧ୍ୟପ୍ରଦେଶର ଖଜୁରାହୋ ମନ୍ଦିରରେ ଏସବୁ ଚର୍ଯ୍ୟାର ଚିତ୍ର ଢେର୍ ଦେଖାଯାଏ । ମାତ୍ର ଚଳଣୀ ଓ ସଂସ୍କୃତି ହିସାବରେ ଏହା କିପରି ହେଉଥିଲା ଓ କେଉଁଠାରୁ ଆସିଥିଲା ଏସବୁର ପୁଙ୍ଖାନୁପୁଙ୍ଖ ଆଲୋଚନା ହୋଇ ନାହିଁ । ଭାରତରେ ଅନ୍ୟତ୍ର ଏ ଚିତ୍ରସବୁ କେତେକ ମିଳେ । କିନ୍ତୁ ସାହିତ୍ୟ ଓ ସଭ୍ୟତାର ବିକାଶ ଆଲୋଚନା କଲେ ଏସବୁ ବିଦ୍ୟା ଓ ଚର୍ଯ୍ୟା ମୂଳତଃ ଓଡ଼ିଶାର ନୁହେଁ ; କିମ୍ବା ଓଡ଼ିଆଙ୍କ ଚଳଣିରେ ଏହା ଯେ ବିଶେଷ ପ୍ରବେଶ କରି ପୃଥିବୀରେ ଓଡ଼ିଆଙ୍କୁ ବିଶେଷ କାମଯୋ ଭଙ୍ଗୀବିତ୍ କରିଥିଲା ବା କରିଛି ଏହା ମଧ୍ୟ ସତ୍ୟ ନୁହେଁ । କିନ୍ତୁ ଆମେ ବାଭଳି ବୈଦେଶିକ ଆସି କୋଣାର୍କ ମନ୍ଦିରର ଅବଶେଷ ଦେଖି ଓଡ଼ିଆଙ୍କୁ ଏଇ କଳା ଓ ଚଳଣିରେ ଅତ୍ୟନ୍ତ ଅଭିଜ୍ଞ ଓ ଅଭ୍ୟସ୍ତ ବୋଲି କହିଲେ ହଠାତ୍ ଆମର ନାହିଁ କରିବାର କିଛି ନାହିଁ । ଆମର ଦେଶରେ ଓଡ଼ିଆ ସାହିତ୍ୟିକମାନେ ମଧ୍ୟ ସହଜିଆ ଧର୍ମ ଆମର, ଏ ସବୁ ବିଦ୍ୟା ଓ ଚଳଣି ଆମର ବୋଲି ଅହଙ୍କାର କରିବାର ମଧ୍ୟ କମ୍ ଦେଖାଯାଏ ନାହିଁ । ଏଥିପାଇଁ ଲୋକସାହିତ୍ୟ ଓ ଲୋକ ବ୍ୟବହାରକୁ ତନଖି କରି ନ ଚାହିଁ ଖାଲି କୋଣାର୍କକୁ ଚାହିଁ ବିଦେଶୀ ଯାହା କହୁଛନ୍ତି ଆମେ ସେତିକି କହିଲେ ଚଳିବ ନାହିଁ ।

ଅଚ୍ଛା ଦେଖାଯାଉ ସାରଳାଦାସଙ୍କ ସମୟରେ ଅବସ୍ଥା କଣ ଥିଲା । ହିନ୍ଦରେ ଗୂଢ଼ କରି ପନ୍ଥ ଲେଖିଥିବା କେତେକ ରାଜପ୍ରଶସ୍ତି ଛଡ଼ା ଓ ପୂର୍ବଭାରତରେ ବୌଦ୍ଧଗାନ ଦୋହାଦି

ବାହାରଥିବା ଚର୍ଯ୍ୟାପଦାଦ ଘଣ୍ଟଦେଲେ ଦେଶୀ ପରାକୃତରେ ଲେଖା ହୋଇଥିବା ଗ୍ରନ୍ଥମାନଙ୍କ ଭିତରେ ଖୁବ୍ ସମ୍ଭବ ସାରଳା ଦାସ ମହାଭାରତ ପ୍ରଥମ । ସେତେବେଳକୁ ବଙ୍ଗଳା ପ୍ରଭୃତି ଭାଷାରୁ ଓଡ଼ିଆ ପୂରାପୂରି ଅଲଗା ହୋଇ ସରିଥିଲା । ତଥାପି ବଙ୍ଗଳାରେ କାଶୀରାମ ଦାସଙ୍କ ମହାଭାରତ ଲେଖା ହେବା ପୂର୍ବରୁ ସାରଳା ଦାସଙ୍କ ଓଡ଼ିଆ ମହାଭାରତ ପୁରାଣ ପଣ୍ଡା ଓ କଥକମାନେ ସେ ଦେଶରେ ମଧ୍ୟ ବ୍ୟବହାର କରୁଥିଲେ । ( ବଙ୍ଗ ଭାଷା ଓ ସାହିତ୍ୟରେ ପ୍ରାମାଣ୍ୟ ପୁରୁଷ ସ୍ୱର୍ଗତଃ ଦୀନେଶ ଚନ୍ଦ୍ର ସେନ ନିଜର ବଙ୍ଗ ଭାଷାର ସାହିତ୍ୟରେ ବଙ୍ଗଦେଶରୁ ବଙ୍ଗାକ୍ଷରରେ ପାଇଥିବା ସେହି ସମୟର ସାରଳା ମହାଭାରତରୁ ଉଦ୍ଧୃତାଂଶ-ମାନ ନିଜର ବଙ୍ଗଭାଷା ଓ ସାହିତ୍ୟ ପୁସ୍ତକରେ ଦେଇଅଛନ୍ତି । )

ଓଡ଼ିଆଙ୍କ ଧର୍ମ ପର ବାହାରକୁ ଜଣା ପଡ଼ୁଥିବା ଏହି ବଚନ ପରକୀୟା ଓ ପଞ୍ଚମକାର ସେବା ସାରଳାଦାସଙ୍କ ବେଳକୁ ଓଡ଼ିଆଙ୍କ ଭିତରେ ଥିଲା କି ନା, ଥିଲେ ତାହା କିପରି କେତେ ଥିଲା ଏହା ଆଲୋଚନା କରି ଦେଖିବା, ଓ ଦେଖାଇବା ସାରଳା ସାହିତ୍ୟର ଧର୍ମ ବିଗ୍ରହରେ ଗୋଟିଏ ମୁଖ୍ୟ ଆଲୋଚ୍ୟ ବିଷୟ । ସ୍ଥପତିମାନଙ୍କ ଭିତରେ ନିଜ ନିଜ ସ୍ଥାପତ୍ୟରେ ଏ ସବୁ କାମ କଳାର ଚର୍ଯ୍ୟା ସାରଳାଙ୍କ ବେଳକୁ ଖୁବ୍ ପ୍ରକାଶ ପାଇଥିଲା । କୋଣାର୍କ ମନ୍ଦିର ସାରଳା ଦାସଙ୍କ ଦୁଇ କିମ୍ବା ତିନିଶ ବର୍ଷ ତଳର କାମ । ପୁଣି ଶିଳ୍ପୀମାନଙ୍କ ଏ ବିପରି ଘଟିଥିଲା ହୁଏ ତ ତାହାର ଅଧିକ ଶହେ ଦୁଇଶ ବର୍ଷ ତଳରୁ । ଯାହା ଜଣାପଡ଼ୁଛି ସେଥିରୁ ଏବେ କହିଦେବ ଲିଙ୍ଗରାଜ ମନ୍ଦିର ବେଳକୁ ସ୍ଥପତିଏ ଏ ସବୁ ଖୋଦନରେ ହାତ ଚଳାଇବା ଆରମ୍ଭ କରିଥିଲେ । କିନ୍ତୁ ଗୋଟିଏ କଥା ମନେ ରଖିବାର ଅଛି । ଓଡ଼ିଶାର ସାମାଜିକ

ଚଳଣିରେ ଏସବୁର ସଙ୍କେତ ନାହିଁ । ବଙ୍ଗଦେଶ ପରି ସହଜଅରୁ ଚାଉଳ, ଅଡ଼ଲ, କଣ୍ଡାଭଜା, ସ୍ୱାମ ବକ୍ଷଭୀ, ଖୁସୀ ବିଶ୍ୱାସୀ ପ୍ରଭୃତି କେତେକ ତଥାକଥିତ ଗୁରୁଗୃହିତ ଧର୍ମଧ୍ୱଜୀମାନେ ଏ ଦେଶରେ ପ୍ରକାଶ ପାଇନାହାନ୍ତି କମ୍ବା ଭୁବନେଶ୍ୱରଠାରୁ କଳା ବିଦ୍ୟା ଏ ଦେଶ ଶିଳ୍ପୀଙ୍କ ସ୍ୱାଧୀନ କଳାବିକାଶ ଭିତରେ ପ୍ରତିଷ୍ଠିତ ହୋଇ-ନାହିଁ । ବିରାଟ ମନ୍ଦିର ନିର୍ମାଣରୁ ଅନୁମାନ ମିଳୁଛି ଅନ୍ତତଃ ଶେଷ ଅଡ଼କୁ କୋଶଳ କେଶରୀମାନେ ଓ ସମସ୍ତ ଗଙ୍ଗମାନେ ଓଡ଼ିଶାରେ ଥିଲେ ବିଜେତା ଓ ସମ୍ରାଟ । କଳିଙ୍ଗ ସଭ୍ୟତାରେ ଏହା ଏକ ଘୋର ବ୍ୟତିକ୍ରମ ଓ ବିପ୍ଳବ । କାରଣ କାହିଁକି ନା ଅଶୋକ ଖାରବେଳ ସମୟର ଲେଖା ମୂଳ ସାହିତ୍ୟରୁ ସ୍ପଷ୍ଟ ଜଣାପଡ଼ୁଛି କଳିଙ୍ଗରେ ସାମ୍ରାଜ୍ୟ ନ ଥିଲା । ଲୋକ ନେତାମାନେ—ସମ୍ଭବତଃ ନିର୍ବାଚିତ ନେତାମାନେ ଶାସନ ଓ ସେନା ଚାଳନା କରୁଥିଲେ । ତାହା ପରେ ଏହି ସୂତ୍ରରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ମୁଣ୍ଡ ଟେକି ଉଠିଥିଲା । ସେଥିରେ ଠିକ୍ ନିର୍ବାଚିତ ନେତାଏ ଥାଆନ୍ତୁ ବା ନ ଥାଆନ୍ତୁ ପରସ୍ପର ଆକ୍ରମଣ ଆଶଙ୍କାରେ ରାଜାମାନେ ନିଜ ପ୍ରଜାଙ୍କ ଉପରେ ନିର୍ଭର କରିବାକୁ ବାଧ୍ୟ ହେଉଥିଲେ । କୋଶଳ କେଶରୀଙ୍କ ଶେଷ ଅଡ଼କୁ ହୁଏତ ଏ ପରିସ୍ଥିତି ବଦଳି ଯାଇ-ଥିଲା । ଏହି ପରିବର୍ତ୍ତିତ ପରିସ୍ଥିତିରେ ବିରାଟ ତୁଙ୍ଗ ମନ୍ଦିର ସବୁ ମୁଣ୍ଡ ଟେକିଲା । କିମ୍ବଦନ୍ତୀ ଅଛି, କୋଣାର୍କର ଶିଳ୍ପୀମାନେ ଏକ ପ୍ରକାର ସମ୍ରାଟଙ୍କ ବେଠି କରୁଥିଲେ । ବାର ବର୍ଷ ଧରି ସେମାନେ ଘରକୁ ଯାଇ ନ ଥିଲେ ଓ ପ୍ରାଣ ଭୟରେ ନିଜର କଳା କୌଶଳ ଦେଖାଇବାରେ ଲାଗିଥିଲେ । ଦେଉଳ ମୁଣ୍ଡି ମାରି ନ ପାରିଲେ କାରଣ ବଢ଼େଇ ହାଣ ଖାଇବା କଥା ଏଠାରେ ସ୍ମରଣୀୟ ।

ଏହି ପରିସ୍ଥିତିରେ ଅତଏବ ସ୍ୱାଦ୍ୟ ତନ୍ତ୍ରର ପଞ୍ଚମକାର ସେବା ଓ ଜୟଦେବ ପ୍ରଭୃତିଙ୍କ ପରକୀୟା ପ୍ରେମ ଓଡ଼ିଶାରେ ପଣ୍ଡି ସମ୍ରାଟମାନଙ୍କ ଅନୁକୂଲ୍ୟ ପାଇ ଶିଳ୍ପୀକୁ କଳଙ୍କିତ କରିଥିଲା । ହେଲେହେଁ ସମାଜର ଚଳଣୀକୁ ବିଶେଷ କୁତ୍ସିତ କରିବାର ନିଦର୍ଶନ ନାହିଁ ।

ଏହି ସବୁ ଚଳଣି ଓ ଧର୍ମ ନାମରେ ବ୍ରହ୍ମଚର୍ଯ୍ୟହୀନ ଅଧର୍ମ ବିରୋଧରେ ଉଠିଥିଲେ କପିଳେନ୍ଦ୍ର ଦେବ । ସେ ହେଉଛନ୍ତି ଓଡ଼ିଶାର ବିକ୍ରମାଦିତ୍ୟ । ସେତିକିବେଳେ ନୂତନ ଜୀବନର ପ୍ରକାଶ ରୂପେ ଗୃହଅଟେ ସାହିତ୍ୟରେ ଯେପରି ଦେଶ ବିସ୍ତାରରେ ସେହିପରି ଉଦ୍‌ବୋଧନର ବିଭବ ସୃଷ୍ଟି ଉଠିଲା । କପିଳେନ୍ଦ୍ରଙ୍କର ସାମ୍ରାଜ୍ୟ ଥିଲେ ମଧ୍ୟ ସେ କିନ୍ତୁ ପ୍ରାଣରେ ସାମ୍ରାଜ୍ୟ ପନ୍ଥାରେ ପଥିକ ନ ଥିଲେ । ତାଙ୍କ ଲେଖମାନଙ୍କରୁ ଏହା ସ୍ପଷ୍ଟ ଜଣା ପଡ଼େ । ଗୋଟିଏ ଲେଖରେ ସେ କହିଛନ୍ତି "ଶ୍ରୀ ଜଗନ୍ନାଥ ମୋହର ବାହ୍ୟ ଅଭ୍ୟନ୍ତର ଜାଣୁ ମୋହର ଯେତେ ରତ୍ନ ପଦାର୍ଥ ଅଛି ସେ ତୋହର × × ×ଏ ଭୂମି ଖଣ୍ଡ ଓ ଯାହାକୁ (ଏହାକୁ) ଅନୁଗ୍ରହ କରିଥା, ମୋହର ସେ କେବେ ନୁହେ" ଆଉ ଗୋଟିଏ କଥା ଏଠି ଲକ୍ଷ୍ୟ କରିବାର ଅଛି । କପିଳେନ୍ଦ୍ରଙ୍କ ସାମ୍ରାଜ୍ୟ କୋଶଳ ଓ ଗଙ୍ଗମାନଙ୍କ ତୁଳନାରେ ବହୁ ବିସ୍ତୀର୍ଣ୍ଣ ଥିଲା । ମନ୍ଦିର ତୋଳିବାକୁ ବିଭବ ଥିଲେ ସେ ଜଗନ୍ନାଥ କୋଣାର୍କ ଠାରୁ ବଡ଼ ମନ୍ଦିର ତୋଳିପାରନ୍ତେ କିନ୍ତୁ କୌଣସିଠାରେ ତାଙ୍କର ସେ ଦୋଷ ଦେଖାଯାଇ ନାହିଁ । ତାଙ୍କ ଧର୍ମ ଧାରଣାରେ ମଧ୍ୟ ତାନ୍ତ୍ରିକତାର ପଞ୍ଚମକାର ବା ସହଜିଆର ପରକୀୟା ପ୍ରେମର କୌଣସି ସମ୍ପର୍କ ଥିବାର ଜଣା ଯାଉନାହିଁ । ବରଂ କଳଙ୍କର

ଜୈନଦେବ ଜଗନ୍ନାଥର ସେବା ଓ ଉପାସନା ତାଙ୍କ ଧର୍ମର ପ୍ରଧାନ ଅଙ୍ଗ ଥିବା ସୁସ୍ପଷ୍ଟ ।

ସାରଳା ଦାସ ଏତକ ବେଳର ସାହିତ୍ୟିକ ଉଦ୍‌ବୋଧନର ପ୍ରତୀକ । ସାରଳା ଦାସଙ୍କ ଲେଖାରେ ପ୍ରକ୍ଷେପ ବହୁତ । ଏବ ଛପା ସାରଳା ମହାଭାରତରେ 'ଖଲ୍ୟକାର' ବା 'ଖନକ' ଚରିତରେ କୃଷ୍ଣଙ୍କ ଦୁତୀ ହରଣ କଥା ଅତି ବିଭତ୍ସ ଭାବରେ ବର୍ଣ୍ଣନା କରାଯାଇଛି । କିନ୍ତୁ ଏହି ପ୍ରକ୍ଷେପ ମଧ୍ୟ ସ୍ୱୟଂ ସାରଳା-ଦାସ ସେ କାର୍ଯ୍ୟକୁ ପସନ୍ଦ କରୁ ନ ଥିଲେ ବୋଲି ପ୍ରାମାଣ୍ୟ ଭାବେ ଲେଖିଛନ୍ତି । ସାରଳାଙ୍କୁ କୁହାଇଛନ୍ତି 'ମୋର ନାମ ସମ୍ବନ୍ଧରେ ଏ ବୃଦ୍ଧି ନ ହେଉ' । ସାରଳା ଦାସ ଗ୍ରାମଦେବତୀଠାରୁ ବନଦେବୀ ପର୍ଯ୍ୟନ୍ତ ଯେଉଁଠାରେ ଗୋଟିଏ ଠାକୁରାଣୀର ନାଁ ପଡ଼ିଯାଇଛି ସେଠାରେ ନାନାଭାବରେ ବହୁ ସ୍ତୁତି କରିଛନ୍ତି । କିନ୍ତୁ ଏ ଠାକୁରାଣୀମାନେ କୌଣସିଠାରେ ପଞ୍ଚମକାର ସେବୀ ତାନ୍ତ୍ରିକ ଠାକୁରାଣୀ ନୁହଁନ୍ତି । ସାରଳା ଦାସ ତାନ୍ତ୍ରିକ ସିଦ୍ଧି ପାଇଥିଲେ ବୋଲି ଓ ଦେବୀଙ୍କର ସାକ୍ଷାତ୍ ସାହାଯ୍ୟରେ ଗ୍ରନ୍ଥ ଲେଖିଥିଲେ ବୋଲି ବହୁତ ଜାନପଦ ସୁଲଭ ମିଥ୍ୟାମୂଳକ କିମ୍ବଦନ୍ତୀ ଏବ ସାରଳା ମହାଭାରତରେ ଦେଖାଯାଏ । ସାରଳା ଦାସଙ୍କ ମୁହଁରେ ମଧ୍ୟ ଏପରି କଥା ବହୁ ଧରାଇ ଦିଆ-ଯାଇଛି । କିନ୍ତୁ ସେସବୁ ବର୍ଣ୍ଣନାରେ ମଧ୍ୟ ପଞ୍ଚମକାର ସେବା ପ୍ରଶସ୍ତି ପାଇବା ଭଳି କିଛି ସ୍ପଷ୍ଟ ଭାବରେ ପଶି ପାରିନାହିଁ । ଅପରନ୍ତୁ ଜଗନ୍ନାଥ ହେଉଛନ୍ତି ତାଙ୍କର ସବୁ, ମହାଭାରତରେ ସାରଳା ଦାସଙ୍କର କୃଷ୍ଣ ହେଉଛନ୍ତି ଆମର ଜଗନ୍ନାଥ, ତାଙ୍କୁ ସାରଳା ଦାସ କୂଟକପଟିଆ ଚକ୍ରୀ ଅଦ୍ଭୁତ କର୍ମୀ ରାଜନୀତିକ ରୂପେ ବର୍ଣ୍ଣନା କରିଛନ୍ତି । ମାତ୍ର ମୂଳତଃ ଜଗନ୍ନାଥ ହେଉଛନ୍ତି ବିଶ୍ୱମୂଳ

ଓ ବିଶ୍ୱବିକାଶର ଗୋଟିଏ ଦାର୍ଶନିକ ସଙ୍କେତ । ବିଶ୍ୱ ବିକାଶ ବୃଦ୍ଧି ବସିଲେ ସମସ୍ତ ସଂଗ୍ରାମର ସମାଧାନ ସେହିଠାରେ । କ୍ରିୟା ଓ ଅପକ୍ରିୟାର ବୈଷମ୍ୟରେ ଜଗତ ସୁନ୍ଦର । କର୍ମ, ଅକର୍ମ, ବିକର୍ମ, ଏ ସମସ୍ତର ସମାଧାନ ହେଉଛି ବିଶ୍ୱ ବିକାଶରେ ସାମ୍ୟ ଓ ଶାନ୍ତି । ଏହି ହିସାବରେ ସାରଳା ଦାସଙ୍କ ଜଗନ୍ନାଥ ବିଶ୍ୱ ମୂଳ ଓ ବିଶ୍ୱ ପ୍ରକାଶର ଦେହଧାରୀ ପୁରୁଷ କୃଷ୍ଣରୂପେ ସତ୍ୟ ଶିବ ସୁନ୍ଦର ମୂର୍ତ୍ତିମନ୍ତ ବିଶ୍ୱଦେବ ।

ଭକ୍ତି ଧର୍ମ ଅର୍ଥାତ୍ ଉପାସ୍ୟରେ ଆତ୍ମସମର୍ପଣ ଓ ସେହି ସଙ୍ଗେ ଉପାସ୍ୟଠାରେ ନିଜର ସୁଖଶ୍ରୀ ବୃଦ୍ଧି ପାଇଁ ପ୍ରାର୍ଥନା ଆଜିକାଲି ପୃଥିବୀ ସାରା ଘୋଟି ଯାଇଛି । ଏହି ପ୍ରାବରଣ ଭିତରେ ଓଡ଼ିଶାର ଜଗତରୂପୀ ପୁରୁଷ ଜଗନ୍ନାଥ ଓ ତାହାର ଉପାସନା ଆଜି ଏବେ ଦିଶୁ ନାହିଁ କହିଲେ ହୁଏ । ଏହି ପ୍ରତଚଷ୍ଟୃରେ ସାରଳା ଦାସଙ୍କ ଧର୍ମ ଧାରଣାକୁ ଅନେକେ ଦେଖି ବସିବେ ଏଥିରେ ବିଶେଷତା କିଛି ନାହିଁ । ସେହି ଦୃଷ୍ଟିରେ ଅନେକ କହୁଛନ୍ତି ସେ ଯେପରି ଦେବୀର ଭକ୍ତ ଥିଲେ ସେହିପରି ପଞ୍ଚଦେବତାର ଉପାସକ ଥିଲେ କିନ୍ତୁ ଦେବ ଦେବୀ ମାନେ ଦେଖି ତାଙ୍କ କଥା ଗାଇଗଲେ ସେଉଠା ଭକ୍ତଧର୍ମ ହେଲା ନାହିଁ । ଭକ୍ତି ଧର୍ମର ସଙ୍କେତ ହେଉଛି ଅସହିଷ୍ଣୁତା ଓ ଅହଙ୍କାର । 'ମୋ ଦେଅଁଙ୍କ ପରି ଆଉ କିଏ ଅଛି ।' 'ମୋ ପରି ମଧ୍ୟ ତାଙ୍କର ଆଉ ଭକ୍ତ ନାହିଁ ।' 'ମୋତେ ସେ ଯେତେ ଦିଅନ୍ତି ଓ ମୋର ଯେତେ କାର୍ଯ୍ୟ କରନ୍ତି ଆଉ କାହାର କରନ୍ତି ନାହିଁ ।' ଏହି ଭାବରେ ଅହଙ୍କାରୀ ଓ ଅସହିଷ୍ଣୁ ହେବା ଭକ୍ତି ଧର୍ମର ସ୍ପଷ୍ଟ ଲକ୍ଷଣ । ସାରଳା ଦାସଙ୍କ ଦେବ ଦେବୀ ପ୍ରଶଂସାରେ ଏ ଭକ୍ତିଧର୍ମ ଦେଖାଯାଏ ନାହିଁ । ସାରଳାଙ୍କ ପ୍ରାର୍ଥନା ସବୁ ମୌଳିକ କି ପ୍ରକ୍ଷିପ୍ତ ତାହା ଅନୁସନ୍ଧାନରେ ବାର ଦେଖିବାର


Digitized by srujan ka@gmail.com

ଅଛୁ । ସେ ଯଥାର୍ଥରେ ଦେବ ଦେବୀଙ୍କର ଉପାସକ ଥିଲେ । ଭକ୍ତ ନ ଥିଲେ । ଭକ୍ତ ମାନେ । ଉପାସକ ମୁଁ ସେହିପରି ବା ସେହି ବୋଲି ଧ୍ୟାନ କରି ତନ୍ମୟ ହେବାକୁ ଚେଷ୍ଟା । ସାରଳା ଦାସ ଥିଲେ ଉପାସକ । ଏହି ହିସାବରେ ସାରଳାଦାସଙ୍କ ଧର୍ମ ବୁଝିବାକୁ ହେବ । ଏହା ବୁଝିବାପାଇଁ କମ ଗୃଷ ପର୍ଯ୍ୟନ୍ତ ଓଡ଼ିଶାରେ ହୋଇ-ନାହିଁ । ଏଥିପାଇଁ ବହୁତ ଅନୁସନ୍ଧାନ ଓ ଆଲୋଚନା କରିବାର ଅଛୁ । ସେ ସବୁ ନିମନ୍ତେ ପୀଠ ତିଆରି କରିବାପାଇଁ ସଙ୍କେତ ମାତ୍ର କୁହାଗଲା ।

---

# ସାରଳା ମହାଭାରତର ଐତିହାସିକ ଉପାଦାନ

## କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

ସାରଳା ଦାସଙ୍କ ମହାଭାରତ ଐତିହାସିକ ଗ୍ରନ୍ଥ ନୁହେଁ, କିନ୍ତୁ ସେଥିରେ ପ୍ରଚ୍ଛନ୍ନଭାବରେ ଅନେକ ଐତିହାସିକ ଉପାଦାନ ରହିଛି । କବି ଯଦି ମୂଳ ସଂସ୍କୃତ ମହାଭାରତକୁ ସମ୍ପୂର୍ଣ୍ଣ ଅନୁସରଣ ବା ଅନୁବାଦ କରିଥାନ୍ତେ, ତାହାହେଲେ ସେଥିରେ ଓଡ଼ିଶା ଇତିହାସର ଅଭାସ ପର୍ଯ୍ୟନ୍ତ ରହି ନ ଥାନ୍ତା । କିନ୍ତୁ ସାରଳା ମହାଭାରତ ଗୋଟିଏ ସମ୍ପୂର୍ଣ୍ଣ ଅଭିନବ ଗ୍ରନ୍ଥ; ଏହା ତତ୍କାଳୀନ ଓଡ଼ିଶାର ବିଶ୍ୱକୋଷ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଣୁ ଏଥିରେ ଉତ୍କଳର ଅତୀତ ବା ତଦାନୀନ୍ତନ ଘଟଣାବଳୀ ଏବଂ ଭୌଗୋଳିକ ଓ ଐତିହାସିକ ନାମମାନ ମୂଳ ମହାଭାରତର ଅଖ୍ୟାୟିକାମାନଙ୍କ ସହିତ ବିଚିତ୍ର ଭାବରେ ଜଡ଼ିତ ହୋଇ ରହିଛି । ଅମ୍ଭମାନଙ୍କ ଦେଶରେ ଧାରାବାହିକ ଭାବରେ ଇତିହାସ ଲେଖା ହେଉ ନ ଥିଲା, କିନ୍ତୁ କେତେକ କିମ୍ବଦନ୍ତୀ ବଂଶପରମ୍ପରା ଚାଲି ଆସିଥିଲା । ସାରଳା ଦାସ ଏହି କିମ୍ବଦନ୍ତୀଗୁଡ଼ିକୁ ଯଥାସାଧ୍ୟ ତାଙ୍କ ମହାଭାରତରେ ସନ୍ନିବେଶ କରି ଯାଇଛନ୍ତି । ତାଙ୍କ ବର୍ଣ୍ଣିତ ଓଡ଼ିଶାର କିମ୍ବଦନ୍ତୀ ଓ ଭୌଗୋଳିକ ନାମ ଇତ୍ୟାଦିକୁ ତାମ୍ର ଓ ଶିଳାଲେଖ ଇତ୍ୟାଦି ସାହାଯ୍ୟରେ ସମ୍ୟକ୍ ଆଲୋଚନା କଲେ ଓଡ଼ିଶାର ଇତିହାସ ସମ୍ବନ୍ଧରେ ଅନେକ ନୂତନ ତଥ୍ୟ ଆବିଷ୍କୃତ ହେବ ଓ ସେଗୁଡ଼ିକଦ୍ୱାରା ଗୋଟିଏ ସୁନ୍ଦର ଗ୍ରନ୍ଥ ଲେଖାଯାଇ ପାରିବ ।

ସାରଳା ମହାଭାରତ ପଢ଼ିଲେ ଜଣାଯାଏ ଯେ, କବି ମୂଳ ମହାଭାରତକୁ ଅନୁସରଣ କରି ପ୍ରଥମେ କୌରବ ଓ ପାଣ୍ଡବମାନଙ୍କୁ ଉତ୍ତର ଭାରତସ୍ଥ କୁରୁପ୍ରଦେଶର ଲୋକ ବୋଲି ବର୍ଣ୍ଣନା କରିଛନ୍ତି, କିନ୍ତୁ ଗ୍ରନ୍ଥଲେଖାରେ ଯେତେ ବେଶୀ ଅଗ୍ରସର ହୋଇଛନ୍ତି, ସେତେ ବେଶୀ ସେ ମହାଭାରତର ଏହି ମୌଳିକ କଥାଟି ଭୁଲି ଯାଇଛନ୍ତି । ଉତ୍କଳର ନଦନଦୀ, ଗିରିବନ, ନଗର ଜନପଦ, ଗଳ୍ପ-ପୁରାଣ, ଇତିହାସ-କିମ୍ବଦନ୍ତୀ, ବାରବ୍ରତ, ଧର୍ମ-ଧାରଣା, ଜ୍ଞାନ-ବିଜ୍ଞାନ, ବେଶଭୂଷା, ଖେଳକୌତୁକ, ଆଚାର ବ୍ୟବହାର ଇତ୍ୟାଦିର ଗୋଟିଏ ବିପୁଳ ଜ୍ଞାନଭଣ୍ଡାର କବିଙ୍କ ମସ୍ତିଷ୍କରେ ପୂରି ରହିଥିଲା । ଏହି ଜ୍ଞାନଭଣ୍ଡାରର ସଦ୍‌ବ୍ୟବହାର କରିବାକୁ ଯାଇ ସେ ଉତ୍କଳ ଦେଶର ପୃଷ୍ଠଭୂମିକାରେ ହିଁ ମହା-ଭାରତର ଅଖ୍ୟାୟିକାମାନ ଅଙ୍କନ କରିଯାଇଛନ୍ତି । ତାଙ୍କ ମହାଭାରତ ପଢ଼ି ସାରିବା ପରେ ଧାରଣା ହୁଏ ଯେ, କୌରବ ଓ ପାଣ୍ଡବମାନେ ଏହି ଓଡ଼ିଶା ଦେଶରେ ହିଁ ବଢ଼ିଥିଲେ, ଏହି ଦେଶର ବେଶ-ଭୂଷାରେ ଆଚ୍ଛାଦିତ ହୋଇ ଏହି ଦେଶର ଅସ୍ତ୍ରଶସ୍ତ୍ର ଶିକ୍ଷା କରିଥିଲେ । ସେମାନେ ଏହି ଦେଶର ଡିମିଠି ଖେଳ ଖେଳିଥିଲେ, ଏହି ଦେଶରେ ପାଣ୍ଡବମାନେ ବନବାସ କରିଥିଲେ, ଏହି ଦେଶରେ ବିରାଟ ଗଡ଼ ଥିଲା, ଏହି ଦେଶରେ କୀଚକଗଡ଼ ଥିଲା, ଏହି ଦେଶର ବନପର୍ବତ ଇତ୍ୟାଦିରେ ପାଣ୍ଡବମାନେ ବୁଲିଥିଲେ ଏହି ଦେଶର ଦେବତାମାନଙ୍କୁ ପୂଜା କରିଥିଲେ, ସେମାନେ ଏହି ଦେଶରେହିଁ ଅଶ୍ୱମେଧ ଯଜ୍ଞ କରିଥିଲେ, ସେମାନଙ୍କ ଅଶ୍ୱ ଏହି ଦେଶରେହିଁ ପ୍ରଥମେ ଘୂରି ବୁଲିଥିଲା, ଏହି ଦେଶରେ ହିଁ ମୂଳ ମହାଭାରତ ବର୍ଣ୍ଣିତ ପଞ୍ଚ କଟକ ଅବସ୍ଥିତ ଥିଲା, ଏହି ଦେଶର ପତନନଗରୀରେହିଁ ଏକମାତ୍ର କୁଳାଙ୍କୁର ପରୀକ୍ଷିତଙ୍କୁ ରାଜା କରି

ଓ ଏହି ଦେଶର ତୀର୍ଥମାନ ଭ୍ରମଣ କରି ସେମାନେ ସ୍ୱର୍ଗାରୋହଣ ପାଇଁ ମହାଯାତ୍ରା କରିଥିଲେ ଓ ଏହି ଦେଶରେହିଁ ଜନ୍ମେଜୟ ପିତାଶନ୍ରୁ ସର୍ପବଂଶକୁ ଧ୍ୱଂସ କରିବାପାଇଁ ସର୍ପଯଜ୍ଞ କରିଥିଲେ । ଯେଉଁ ମହାଭାରତର ମୂଳଭିତ୍ତି ଓଡ଼ିଶାର ନିଜସ୍ୱ ଉପରେହିଁ ସମ୍ପୂର୍ଣ୍ଣରୂପେ ପ୍ରତିଷ୍ଠିତ, ସେଥିରୁ ଓଡ଼ିଶା ଇତିହାସର ପ୍ରଚୁର ଉପାଦାନ ମିଳିବା ସୁନିଶ୍ଚିତ । ମାତ୍ର ଏଠାରେ ଏହି ଉପାଦାନ-ମାନଙ୍କ ମଧ୍ୟରୁ କେତୋଟିମାତ୍ରର ସୂଚନା ଦେବା ହିଁ ସମ୍ଭବପର

ପ୍ରଥମତଃ ଏହି ମହାଭାରତର ରଚନାକାଳ ସମ୍ବନ୍ଧରେ ଏଥିରୁ ଯେଉଁ ଅନ୍ତର୍ନିହିତ ଐତିହାସିକ ତଥ୍ୟ ମିଳେ, ତାହା ହିଁ ଆଲୋଚନା କରାଯାଉ । ଏହାର ଆଦିପର୍ବରେ ମହାରାଜ କପିଳେଶ୍ୱରଙ୍କ ନାମ ଉଲ୍ଲେଖ ଥିବା କଥା ସମସ୍ତଙ୍କ ସୁବିଦିତ । ଏହିହେତୁରୁ ସାରଳା ଦାସ ସୂର୍ଯ୍ୟବଂଶ ସ୍ଥାପୟିତା କପିଳେନ୍ଦ୍ର ବା କପିଳେଶ୍ୱରଙ୍କ ସମସାମୟିକ ଥିଲେ ଓ ତାଙ୍କ ରାଜତ୍ୱକାଳରେ ୧୪୩୫ଠାରୁ ୧୪୬୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେ ତାଙ୍କ ମହାଭାରତ ଲେଖିଥିଲେ ବୋଲି ଅନେକ ମତ ପ୍ରକାଶ କରିଥିବା ଅତ୍ୟନ୍ତ ସ୍ୱାଭାବିକ ହୋଇଛି । କିନ୍ତୁ ଏହି ପ୍ରକାଣ୍ଡ ଗ୍ରନ୍ଥରେ କେବଳ ଥରେମାତ୍ର କପିଳେଶ୍ୱରଙ୍କ ନାମର ଉଲ୍ଲେଖ ପାଇ; ଏପରି ସିଦ୍ଧାନ୍ତରେ ଉପନୀତ ହେଲେ, ସିଦ୍ଧାନ୍ତର ମୂଳଭିତ୍ତି ଅତ୍ୟନ୍ତ ଦୁର୍ବଳ ବୋଲି କହିବାକୁ ହେବ । ଅନେକ କାରଣରୁ ଏହି ସିଦ୍ଧାନ୍ତ ଅଭ୍ରାନ୍ତ ବୋଲି ବିବେଚିତ ହୋଇପାରିବ ନାହିଁ । ଯେଉଁ ପଦଟିରେ କପିଳେଶ୍ୱରଙ୍କ ନାମ ଉଲ୍ଲେଖ ଅଛି, ତାହା ପ୍ରକ୍ଷିପ୍ତ ହୋଇପାରିଥାଏ । ତା'ଛଡ଼ା ସାରଳା ମହାଭାରତ ଲେଖାହେବା ସମୟରେ କପିଳେଶ୍ୱର ନାମଧେୟ ଅନ୍ୟ କୌଣସି ସାମନ୍ତ ରଜା ମଧ୍ୟ ଓଡ଼ିଶାରେ ଥାଇପାରନ୍ତି । ଦକ୍ଷିଣ ଅର୍କଟ ଜିଲ୍ଲାର ମୁନ୍ନୁର

ନାମକ ସ୍ଥାନରୁ ପ୍ରାପ୍ତ ଗୋଟିଏ ପ୍ରାଚୀନ ଲେଖାରୁ ଜଣାଯାଏ ଯେ ସମ୍ରାଟ୍ କପିଳେଶ୍ୱରଙ୍କର ନାତିଙ୍କ ନାମ ମଧ୍ୟ କପିଳେଶ୍ୱର ଥିଲା ଓ ସେ ପ୍ରଥମେ ବେଲ୍ଲୋର ଜିଲ୍ଲାସ୍ଥ କୋଣ୍ଡଭିଡ଼ୁ ଦୁର୍ଗରେ ଓ ପରେ ବିଜିତ ତାମିଲଭାଷୀ ଅଞ୍ଚଳର ଶାସକରୂପେ ତାଙ୍କ ପିତାମହ ସମ୍ରାଟ୍ କପିଳେଶ୍ୱରଙ୍କଦ୍ୱାରା ନିଯୁକ୍ତ ହୋଇଥିଲେ । ଏହି କପିଳେଶ୍ୱର ସମ୍ରାଟ୍ କପିଳେନ୍ଦ୍ରଙ୍କ ଜ୍ୟେଷ୍ଠପୁତ୍ର ହମ୍ବିରଦେବଙ୍କ ପୁତ୍ର ଥିଲେ । କପିଳେନ୍ଦ୍ରଙ୍କ ମୃତ୍ୟୁପରେ ଜ୍ୟେଷ୍ଠ ହମ୍ବିରଦେବ ଓ କନିଷ୍ଠ ପୁରୁଷୋତ୍ତମଦେବଙ୍କ ମଧ୍ୟରେ ସିଂହାସନ ଲାଭପାଇଁ ପ୍ରବଳ ବିବାଦ ଓ ଯୁଦ୍ଧ ଲାଗିଥିଲା । ଶେଷରେ ପୁରୁଷୋତ୍ତମଦେବ ବିଜୟୀ ହୋଇ ସମ୍ରାଟ୍ ହେଲେ । ମାତ୍ର ହମ୍ବିରଙ୍କ ପୁତ୍ର କପିଳେଶ୍ୱର ଅଞ୍ଚଳ ବିଶେଷ ଅଧିକାର କରି ମହାରାଜ ଉପାଧିଧାରଣ ପୂର୍ବକ କେତେକ ସମୟପାଇଁ ସୁଦ୍ଧା ଯେ ରାଜା ହୋଇ ନ ଥିଲେ, ଏ କଥା ନିଶ୍ଚିତଭାବରେ କୁହାଯାଇ ପାରିବ ନାହିଁ । ଏଣୁ ଏହି କପିଳେଶ୍ୱରଙ୍କ ନାମ ଯେ ସାରଳା ଦାସ ଉଲ୍ଲେଖ କରି ନାହାନ୍ତି, ଏ କଥା ମଧ୍ୟ ନିଶ୍ଚିତରୂପେ କୁହାହେବ ନାହିଁ । ଏହିସବୁ କାରଣରୁ ସାରଳା ଦାସଙ୍କୁ ସମ୍ରାଟ୍ କପିଳେନ୍ଦ୍ରଙ୍କ ସମସାମୟିକ ବୋଲି ଧରିନେଲେ ଅନେକ ସନ୍ଦେହ ଉପସ୍ଥିତ ହୁଏ । ମାତ୍ର ତାଙ୍କ ମହାଭାରତର କେତେକ ଅନ୍ତର୍ନିହିତ ନାମ ଓ ଘଟନାମାନ ଆଲୋଚନା କଲେ ଏହି ସନ୍ଦେହ କ୍ରମଶଃ ଦୂରହୁଏ ଓ ସେ ଯେ କପିଳେନ୍ଦ୍ର ଓ ପୁରୁଷୋତ୍ତମଙ୍କ ରାଜତ୍ୱରେ ହିଁ ତାଙ୍କ ଗ୍ରନ୍ଥ ଲେଖିଥିଲେ, ଏହି ଧାରଣା ଦୃଢ଼ୀଭୂତ ହୁଏ । ଏହି ରାଜାମାନଙ୍କ ରାଜତ୍ୱର ଘଟଣାମାନ କାଳ୍ପନିକ ଓ ପୌରାଣିକଭାବରେ ସାରଳା ମହାଭାରତରେ କିପରି ପ୍ରତିଫଳିତ ହୋଇଛି, ତାହାର କେତୋଟି ଉଦାହରଣ ଦେଲେ ବିଷୟଟି ସ୍ପଷ୍ଟ ହେବ ।

ବିଭିନ୍ନ ତାମ୍ର ଓ ଶିଳାଲେଖରୁ ଏବଂ ବାହ୍ମନୀ ଓ ବିଜୟ ନଗର ରାଜ୍ୟର ଇତିହାସରୁ ପ୍ରମାଣିତ ହୁଏ ଯେ କପିଳେନ୍ଦ୍ର-ଦେବ ୧୪୪୩ ଖ୍ରୀଷ୍ଟାବ୍ଦ ବେଳକୁ ରାଜମହେନ୍ଦ୍ରୀ ରାଜ୍ୟ ଅର୍ଥାତ୍ ସମଗ୍ର ବିଶାଖା ପଟ୍ଟନ ଜିଲ୍ଲା, ୧୪୪୮ ଖ୍ରୀଷ୍ଟାବ୍ଦ ବେଳକୁ ସମଗ୍ର ଗୋଦାବରୀ ନଦୀର ଅବବାହିକା ଓ ୧୪୫୮ ଖ୍ରୀଷ୍ଟାବ୍ଦ ବେଳକୁ କୃଷ୍ଣାନଦୀ ପର୍ଯ୍ୟନ୍ତ ଅକ୍ରମଣ କରି ସମଗ୍ର ଉପକୂଳ ଅଞ୍ଚଳ ଅଧିକାର କରିଥିଲେ । ଏହା ପରେ କୃଷ୍ଣାନଦୀ ପାରି ହୋଇ, ବିଜୟ ନଗର ସାମ୍ରାଜ୍ୟର ଅଧୀନରେ ଥିବା ତାମିଲ୍‌ଭାଷୀ ଅଞ୍ଚଳର ଉଦୟଗିରି ଓ ଚନ୍ଦ୍ରଗିରି ନାମକ ପ୍ରଦେଶ ଦ୍ୱୟ ଅଧିକାର କରି କାଞ୍ଚିନଗର (ଅଧୁନିକ କାଞ୍ଜିଭେରମ୍) ମଧ୍ୟ ଦଖଲ୍ କରିଥିଲେ । କୃଷ୍ଣା ଓ କାବେରୀ ନଦୀର ମଧ୍ୟବର୍ତ୍ତୀ ସମସ୍ତ ଅଞ୍ଚଳ ତାଙ୍କ ଅଧିକାରଭୁକ୍ତ ହୋଇଥିଲା ଓ ଏହି ଅଧିକାର ଅନ୍ତତଃ ୧୪୭୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସ୍ଥାୟୀ ହୋଇଥିଲା । କାବେରୀ କୂଳସ୍ଥ ଶ୍ରୀରଙ୍ଗମ୍ ମନ୍ଦିରରେ କପିଳେନ୍ଦ୍ରଙ୍କ ପୁତ୍ର ହମ୍ବିରଦେବଙ୍କ ଶିଳା-ଲେଖ ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ ରହି ତାଙ୍କ ସାମ୍ରାଜ୍ୟର ଦକ୍ଷିଣ ସୀମା ନିର୍ଦ୍ଦେଶ କରୁଛି । ଏହି ବିସ୍ତୃତ ଅଞ୍ଚଳରେ ଯେଉଁ ପ୍ରଧାନ ପ୍ରଧାନ ନଦୀମାନେ ଅଛନ୍ତି ସେମାନଙ୍କ ନାମ ଥିଲା ଗୋଦାବରୀ, କୃଷ୍ଣା ବା କୃଷ୍ଣବେଣୀ ଓ କାବେରୀ; ଯେଉଁ ପ୍ରଧାନ ପ୍ରଧାନ ପର୍ବତମାନେ ଅଛନ୍ତି ସେମାନଙ୍କ ନାମ ଥିଲା ମହେନ୍ଦ୍ର, ସୀମାଚଲମ୍ ଓ ଶ୍ରୀ କୂର୍ମଶୈଳ; ଯେଉଁ ପ୍ରଧାନ ପ୍ରଧାନ ଦୁର୍ଗ ଥିଲା ସେମାନଙ୍କ ନାମ ହେଉଛି ରାଜମହେନ୍ଦ୍ରୀ ବା ବିଦ୍ୟାନଗର, ଦେବରକୋଣ୍ଡା, କୋଣ୍ଡବିଡ, ଉଦୟଗିରି ଚନ୍ଦ୍ରଗିରି ଓ କାଞ୍ଚି ନଗର । ତା ଛଡ଼ା ସମଗ୍ର ଉପକୂଳଟି କରମଣ୍ଡଳ ଓ ଚୋଳ ବା ଚୋଳମଣ୍ଡଳ ନାମରେ ଅଖ୍ୟାତ ହେଉଥିଲା । ଭୌଗୋଳିକ ସ୍ଥାନ

ପୁସ୍ତକାକାରରେ ବ୍ୟବହୃତ ହେଉଥିଲେ ସୁଦ୍ଧା ଅଧୁନିକ ଯୁଗରେ ଦକ୍ଷିଣାଞ୍ଚଳର ଭୌଗୋଳିକ ନାମ ମାନ ଓଡ଼ିଶାର ସମସ୍ତ ସୁଶିକ୍ଷିତ ବ୍ୟକ୍ତି ମଧ୍ୟ କହିପାରିବେ ନାହିଁ । ଶାରଳାଦାସଙ୍କ ସମୟରେ ଭୌଗୋଳିକ ଜ୍ଞାନ ପୁସ୍ତକାକାରରେ ବ୍ୟବହୃତ ହେଉ ନଥିଲା । ଏଣୁ ସେ ସମୟର ଦକ୍ଷିଣାଞ୍ଚଳର ନାମ ମାନ ଅଜ୍ଞାତ ରହିବାର କଥା । କିନ୍ତୁ ଶାରଳା ଦାସଙ୍କ ସମୟରେ ଏହି ଦେଶର ସୈନ୍ୟ ସାମନ୍ତ ଦକ୍ଷିଣାଞ୍ଚଳର ବହୁ ରାଜ୍ୟ ଜୟ କରିଥିଲେ । ଏହି ହେତୁରୁ ସେମାନଙ୍କ ମୁଖ୍ୟରେହିଁ ଦକ୍ଷିଣାଞ୍ଚଳର ଭୌଗୋଳିକ ନାମ ମାନ ଓଡ଼ିଶା ଦେଶରେ ପ୍ରଚଳିତ ହୋଇଥିଲା । ସାରଳା ଦାସଙ୍କ ପୌରାଣିକ କାବ୍ୟରେ ଏହି ଭୌଗୋଳିକ ନାମ ମାନ କିପରି ଭାବରେ ପ୍ରତିଫଳିତ ହୋଇଛି, ତାହା ନିମ୍ନଲିଖିତ ପଦ୍ୟାଂଶ-ମାନଙ୍କରୁ ସହଜରେ ଅନୁମିତ ହେବ ।

ବିରାଟ ପର୍ବରେ ଦକ୍ଷିଣ ଦିଗର ଚର ପାଣ୍ଡବମାନଙ୍କ ସନ୍ଧାନ ନ ପାଇ ସେ ଯେଉଁ ଯେଉଁ ଦେଶ ବୁଲିଥିଲା, ତାହା ଦୁର୍ଯ୍ୟୋଧନଙ୍କୁ କହୁଛି:—

କଳିଙ୍ଗ ମଗଧ ଆଉ ବେଳା ଗୁଜୁରାଟ ।
ମହେନ୍ଦ୍ର ଶବର ବଶବ ଅବର ମହଟ ।
କନାଉଜ ଉଦେଟିରି ପୁଣି ଚନ୍ଦ୍ରଗିରି ।
କାଞ୍ଚି ଚନ୍ଦ୍ରପୁର ଆଉ ଉତ୍ତମ କାବେରୀ ।
ଚୌରମଣ୍ଡଳ କୋଶଳ ମଣ୍ଡଳ ମଲ୍ଲିକା ।
ପାଣ୍ଡବ ନଗର କୃଷ୍ଣାବେଣୀ ଷଡ଼ଙ୍ଗିକା ।
× × × × × ×
ନାଟ ଗୌଡ଼ଙ୍କ ଅବନ୍ତୀ ଅବର କାମାକ୍ଷୀ ।

ତର ତର କୁଣ୍ତାବେଦ ପୁଣି ମଙ୍ଗଳାକ୍ଷୀ ।
ପୂର୍ବ ଦଗର ଗୃହ କହୁଛୁ:—
ତୁଳସୀଦେବ ପୁର ଯେ ପୁଣି ଭୃତଖଣ୍ଡ ।
ଜମ୍ବୁରାଷ୍ଟ୍ର ଉଡ଼ରାଷ୍ଟ୍ର ସ୍ୱର୍ଣ୍ଣ ମାରଖଣ୍ଡ ।
ଉତ୍ତର ଦଗର ଗୃହ କହୁଛୁ:—
ଶଂଖାପୁର ଶ୍ରେଣୀପୁର ବୃନ୍ଦା ମହାରାଷ୍ଟ୍ର
ସିନ୍ଧୁ ମନ୍ଦାର ମହର୍ଠ ପୁଣି ସନ୍ତରାଷ୍ଟ୍ର ।

ଭାନୁମତୀ ସ୍ୱୟମ୍ବରକୁ ଯେଉଁ ଯେଉଁ ଦେଶର ରାଜାମାନେ ଅସିଥିଲେ, ତାହା ବର୍ଣ୍ଣନା କରିବାକୁ ଯାଇ ସାରଳା ଦାସ ଅଦ ପର୍ବରେ ଲେଖିଛନ୍ତି—

ଶରଦେଶ ବୀରଦେଶ ମହାଭୃଣ ଦେଶ
ତ୍ରିମୁହୂର୍ତ୍ତି ଭୋଗକଣ୍ଟ ମନ୍ଦାର ନରେଶ ।
ମାଳବଦେଶ କୁଞ୍ଜର ଦେଶ ମରହଟ୍ଟ
ମଗଧ ଦେଶ କର୍ଣ୍ଣାଟ ଦେଶ ମହାରାଷ୍ଟ୍ର ।
କାଞ୍ଚିନଗର ଉଦୟପୁର ଯେ ନଗର
ବଡ଼ାମ୍ବା ନଗର ଅଭୁ ବିଜୟନଗର
କୁଣ୍ଡୀନଗର ମହେନ୍ଦ୍ର ନଗର ଅବର
ନୀଳ ଅନଳ ଦେଶ ଯେ ପୁଣିହିଁ ମନ୍ଦାର ।

## ଟିପ୍ପଣୀ

ମହାନ୍ଦ୍ର, ମହେନ୍ଦ୍ର ନଗର—ଅଧୁନିକ ରାଜ ମହେନ୍ଦ୍ରୀ । ଉଦେଗିରି, ଚନ୍ଦ୍ରଗିରି, କର୍ଣ୍ଣାଟ ଓ କାଞ୍ଚି—ବିଜୟନଗର ସାମ୍ରାଜ୍ୟର ଉଦୟଗିରି ଓ ଚନ୍ଦ୍ରଗିରି ,ଅଞ୍ଚଳକୁହିଁ କର୍ଣ୍ଣାଟ ଦେଶ କୁହାଯାଉ-

ଥିଲା । ଏହା କର୍ଣ୍ଣାଟର ରାଜଧାନୀ ଥିଲା କାଞ୍ଚିନଗର ବା ଆଧୁନିକ କାଞ୍ଜିଭେରମ୍ ।

ଗୌର ମଣ୍ଡଳ—ଗୈଳ ରାଜାମାନଙ୍କ ଅଧିକୃତ ଅଞ୍ଚଳକୁ ଗୈଳ ମଣ୍ଡଳ ବା ଗୈର ମଣ୍ଡଳ କୁହାଯାଉଥିଲା ।

ପାଣ୍ଡବ ନଗର—ସମ୍ଭବତଃ ପାଣ୍ଡ୍ୟମାନଙ୍କ ଅଞ୍ଚଳ ।

କୃଷ୍ଣାବେଣୀ—କୃଷ୍ଣା ନଦୀ ।

କୁଣ୍ଡାବେଦୀ—କୁଣ୍ଡବିଡୁ ଦୁର୍ଗ ।

ମଲ୍ଲିକା, ମାଳବ ଦେଶ—ଆଧୁନିକ ମଧ୍ୟଭାରତ । ଗୋପୀନାଥପୁର ଶିଳା ଲେଖରେ ବର୍ଣ୍ଣିତ ଅଛି ଯେ କପିଳେନ୍ଦ୍ର ଦେବ ମାଳବଦେଶ ମଧ୍ୟ ଜୟ କରିଥିଲେ । ଅନ୍ୟ ପ୍ରମାଣ ଅଭାବରୁ କୌଣସି ଐତିହାସିକ ଏହା ସତ୍ୟ ବୋଲି ଗ୍ରହଣକରି ନାହାନ୍ତି । କିନ୍ତୁ ମାଦଳାପାଞ୍ଜି ଓ ଗୋପୀନାଥପୁର ଶିଳାଲେଖ ଉଭୟକୁ ଅନୁଶୀଳନ କଲେ କପିଳେନ୍ଦ୍ରଙ୍କ ମାଳବ ଆକ୍ରମଣ ବା ଜୟ ସତ୍ୟ ବୋଲି ପ୍ରତିପାଦିତ ହୁଏ । ମାଦଳାପାଞ୍ଜିରେ ଲେଖା ଅଛି—କପିଳେନ୍ଦ୍ର "ଅ ୨୧ ଙ୍କେ ମଲ୍‌କାକୁ ମାଇଲେ (ମାଦଳାପାଞ୍ଜି, ପୃ ୪୦) ।" ମଲ୍ଲିକା, ମଲ୍‌କା ଓ ମାଳବ ଏକ ଦେଶର ରୂପାନ୍ତରିତ ବିଭିନ୍ନ ନାମମାନ ।

କୁଣ୍ଡୀ ନଗର—ଦେବରକୁଣ୍ଡା ଦୁର୍ଗ

ମନ୍ଦାର—ମନ୍ଦାରନ୍ ଦୁର୍ଗ । ଦକ୍ଷିଣ ପଶ୍ଚିମବଙ୍ଗର ଗଙ୍ଗା କୂଳରେ ଏହା ଅବସ୍ଥିତ ଥିଲା । ବଙ୍ଗର ସୁଲ୍‌ତାନ୍ ନାସିରୁଦ୍ଦିନଙ୍କ ଠାରୁ ଛଡ଼ାଇ ଆଣି କପିଳେନ୍ଦ୍ର ଏହାକୁ ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ପର୍ଯ୍ୟନ୍ତ ଏହା ଓଡ଼ିଶା ଅଧୀନରେ ଥିଲା ।

ତୁଳସାଦେବପୁର୍—କପିଳେନ୍ଦ୍ରଙ୍କ ସମ୍ବନ୍ଧରେ ମାଦଳା-ପାଞ୍ଜିରେ ବର୍ଣ୍ଣିତ ଅଛି "ଅ ୩ ଙ୍କେ ରାଜା ଗଙ୍ଗା ସ୍ନାହାନକୁ ଗଲେ । ତୁଳସାପର ଶାସନ ସେଠାରେ ଦାନ ଦେଲେ (ମାଦଳା ପାଞ୍ଜି, ପୃ ୪୪) ।" ତୁଳସାପୁର୍ ବଙ୍ଗ ଦେଶର ଗଙ୍ଗାକୂଳରେ ଅବସ୍ଥିତ ଥିବ ।

ଏହିପରି ଅଲୋଚନା କଲେ ଦେଖାଯାଏ ଯେ କପିଳେନ୍ଦ୍ର ଦେବ ଯେଉଁ ଯେଉଁ ରାଜ୍ୟ, ଦୁର୍ଗ, ନଗର, ନଦୀ, ପର୍ବତ ଇତ୍ୟାଦି ଜୟ କରିଥିଲେ, କିମ୍ବା ଯେଉଁ ଶାସନ ଦାନ କରିଥିଲେ, ସେ ସମସ୍ତର ନାମ ସାରଳା ଦାସ ଉଲ୍ଲେଖ କରିଛନ୍ତି । ସମସାମୟିକ ଲେଖା ବ୍ୟତୀତ ଅନ୍ୟ କୌଣସି ଲେଖାରେ ଏ ସମସ୍ତ ନାମ ସନ୍ନିବେଶିତ ହେବା ସମ୍ଭବ ନୁହେ ।

ଖାଲି ଭୌଗୋଳିକ ନାମମାନ ଉଲ୍ଲେଖ କରି ସାରଳା ଦାସ ସନ୍ତୁଷ୍ଟ ହୋଇନାହାନ୍ତି । ଯେଉଁ ସମସାମୟିକ ରାଜାମାନଙ୍କ ସହିତ କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବ ଯୁଦ୍ଧ କରିଥିଲେ, ସେମାନଙ୍କ ନାମମାନ ମଧ୍ୟ ସେ ପୌରାଣିକ ଅଖ୍ୟାୟିକାମାନ ସହିତ ଯୋଡ଼ି ଦେଇଛନ୍ତି । ବିଜୟନଗରର ଇତିହାସରୁ ଜଣାଯାଏ ସଙ୍ଗମବଂଶର ମଲ୍ଲିକାର୍ଜ୍ଜୁନ ଓ ବିରୂପାକ୍ଷ ରାଜାଦ୍ୱୟ ୧୦୪୬୦ାରୁ ୧୪୮୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବିଜୟନଗରରେ ରାଜତ୍ୱ କରିଥିଲେ । ଏମାନଙ୍କ ରାଜତ୍ୱ ସମୟରେ ସାଲ୍ୱ ନରସିଂହ ନାମକ ଜଣେ ଶାସନକର୍ତ୍ତା ଚନ୍ଦ୍ରଗିରି ରାଜ୍ୟ ବା କର୍ଣ୍ଣାଟରାଜ୍ୟରେ ବିଜୟନଗର ରାଜାଙ୍କ ପ୍ରତିନିଧି ରୂପେ ଅବସ୍ଥାପିତ ହୋଇଥିଲେ । କିନ୍ତୁ ଏହି ସାଲ୍ୱ ନରସିଂହ ଶେଷରେ ବିଜୟନଗରର ସଙ୍ଗମ-ବଂଶ ଧ୍ୱଂସ କରି ସାଲ୍ୱ ବଂଶ ସ୍ଥାପନ କଲେ । ସାଲ୍ୱ ନରସିଂହଙ୍କ ସହିତ କପିଳେନ୍ଦ୍ର ଓ ପୁରୁଷୋତ୍ତମ ଉଭୟେ ଯୁଦ୍ଧ

କରଥିଲେ । ସାଲ୍ବ ନରସିଂହଙ୍କ କନ୍ୟା ରୁପାମ୍ବିକାଙ୍କୁ ପୁରୁଷୋତ୍ତମ ଦେବ ଶେଷ ପର୍ଯ୍ୟନ୍ତ ବିବାହ ମଧ୍ୟ କରିଥିଲେ । ଏହି ବିବାହର ଘଟନାବଳୀହିଁ ପରେ ବିଖ୍ୟାତ "କାଞ୍ଚିକାବେରୀ" କିମ୍ବଦନ୍ତୀରେ ପରିଣତ ହେଲା । ମଧ୍ୟପର୍ବରୁ ସୁରେଖା ହରଣ ନାମକ ଉପାଖ୍ୟାନରେ ସାରଳା ଦାସ ଏହି ଘଟନାବଳୀକୁ ପ୍ରଚ୍ଛନ୍ନ ଭାବରେ ପ୍ରକାଶ କରିଛନ୍ତି । ଅବଶ୍ୟ ସେ ଏହି ଘଟନାବଳୀକୁ ପୌରାଣିକ ଓ କାଳ୍ପନିକ ଭାବରେ ଯେତେଦୂର ସମ୍ଭବ ପ୍ରକାଶ କରିବାକୁ ବାଧ୍ୟ ହୋଇଥିବେ । କାରଣ ସମସାମୟିକ ଘଟନାମାନ ଯଥାଯଥ ଭାବରେ ପ୍ରକାଶ କଲେ ତାଙ୍କ ପୁରାଣର ମହତ୍ତ୍ୱ ନଷ୍ଟ ହେବାର ସମ୍ଭାବନା ଥିଲା, ତାଛଡ଼ା ସେଥିରେ ରାଜନୈତିକ ବାଧା ମଧ୍ୟ ଆଇପାରେ । ସୁରେଖାର ପିତାଙ୍କ ପରିଚୟ ସାରଳା ଦାସ ନିମ୍ନଲିଖିତ ପଦ୍ୟାଂଶମାନଙ୍କରେ ଦେଇଛନ୍ତି ।

କୂର୍ମପର୍ବତ ବୋଲିଣ ଏକ ଗିରିବରେ,
ସୁରନଦୀ ବୋଲି ନଦୀ ବହେ ଏକଧାରେ ।
ତହିଁର ପଶ୍ଚିମ ଦିଗେ ନଗ୍ରେକ ଅଛଇ,
କରମଣ୍ଡଳ ବୋଲିଣ ନାମ ତାର ହୋଇ ।
ତହିଁର ନରେନ୍ଦ୍ର କୃତଶେଖର ଅଟଇ
ମନ୍ତ୍ରୀର ନାମ ତାହାର ବିରୂପାକ୍ଷ ହୋଇ ।

## ଟିପ୍ପଣୀ

କୂର୍ମପର୍ବତ—ଶ୍ରୀ କୂର୍ମପର୍ବତ । ଏଥିରେ ଶ୍ରୀ କୂର୍ମମନ୍ଦିର ଗାତ୍ରରେ ଓଡ଼ିଶାର ଗଙ୍ଗ ଓ ସୂର୍ଯ୍ୟବଂଶୀ ରାଜାମାନଙ୍କ ବହୁ ଶିଳାଲେଖ ଅଦ୍ୟାପି ରହିଛି ।

ସୁରନଦୀ—ଗୌତମୀଗଙ୍ଗା ବା ଗୋଦାବରୀ ନଦୀ ।

କରମଣ୍ଡଳ—କର୍ଣ୍ଣାଟ ବା ଚନ୍ଦ୍ରଗିରି ଅଞ୍ଚଳ ।

ବିରୂପାକ୍ଷ—ବିଜୟନଗରର ରାଜା । କିନ୍ତୁ କବି ତାଙ୍କୁ ଏଠାରେ ମନ୍ତ୍ରୀରୂପେ ବର୍ଣ୍ଣନା କରିଛନ୍ତି ।

ଆଉ ଗୋଟିଏ ସମସାମୟିକ ଘଟଣାକୁ କବି ଉପର ଭାବରେ ପ୍ରକାଶ କରିଛନ୍ତି, ତାହା ଆଲୋଚନା କରି ପ୍ରବନ୍ଧର ଉପସଂହାର କରୁଛୁ । ଅଧ୍ୟାପକ ପ୍ରଭାତ ମୁଖାର୍ଜି ସମସାମୟିକ ବଙ୍ଗଳା ଓ ଓଡ଼ିଆ ଲେଖାରୁ ପ୍ରମାଣ କରିଛନ୍ତି ପୁରୁଷୋତ୍ତମ ଦେବଙ୍କର ତିନୋଟି ରାଣୀ ଥିଲେ ଓ ତାଙ୍କ ପ୍ରଧାନ ରାଣୀଙ୍କ ନାମ ଥିଲା ଭାନୁମତୀ । ଏହି ଭାନୁମତୀ ରାଣୀ କେଉଁ ଦେଶର ରାଜାଙ୍କ କନ୍ୟା ଥିଲେ, ତାହା ଜଣାଯାଇନାହିଁ । ଆଦି ପର୍ବର ଭାନୁମତୀ ସ୍ୱୟମ୍ବର ନାମକ ଉପାଖ୍ୟାନରେ ସାରଳା ଦାସ ନିମ୍ନଲିଖିତ ପଦ୍ୟାଂଶରେ ଭାନୁମତୀଙ୍କ ପରିଚୟ ଦେଇଛନ୍ତିଃ—

ବିଦ୍ୟା ନଗରୀ ବୋଲିଣ ଦକ୍ଷିଣ କୋଣକେ
ଭୂମନୁ ବୋଲିଣ ତହିଁ ଅଛି ମହୀପାଳେ ।
ଭୁବନବତୀ ଅଟଇ ତା ଭାରିଯା ନାମ
ପରମ ସାଧ୍ୱୀ ସେହି କରେ ଧର୍ମ କର୍ମ ।
ଦୁହିତା ହୋଇଲା ତାର ନାମ ଭାନୁମତୀ
ତିନି ଭୁବନରେ ସେହି ଏକା ରୂପବତୀ ।

### ଟିପ୍ପଣୀ

ବିଦ୍ୟାନଗରୀ—ରାଜମହେନ୍ଦ୍ରୀର ଅପର ନାମ ଥିଲା ବିଦ୍ୟାନଗରୀ । ରେଡ଼ି ରାଜବଂଶର ଧ୍ୱଂସ ହେବା ପରେ କପିଳେନ୍ଦ୍ର ସର୍ବପ୍ରଥମେ ଦକ୍ଷିଣାଞ୍ଚଳର ଏହି ରାଜମହେନ୍ଦ୍ରୀ ରାଜ୍ୟ ଅଧିକାର କରିଥିଲେ । ପୁରୁଷୋତ୍ତମ ଦେବଙ୍କ ପ୍ରଧାନ ମହିଷୀ ଭାନୁମତୀ ଏହି ଦେଶର କନ୍ୟା ହୋଇଥିବା ଅତ୍ୟନ୍ତ ସମ୍ଭବ ।

---

ଓଁ

# ସାରଳା ଦାସ ଓ ଶାକ୍ତଧର୍ମ

ଶ୍ରୀ କରୁଣାକର କର

ଉତ୍ତର ଝଙ୍କଡ଼ ନାମେ ଅଛୁ ଗ୍ରାମଖଣ୍ଡି
ବଜେ ତହିଁ ମାହେଶ୍ୱରୀ ଶ୍ରୀ ସାରଳାଚଣ୍ଡୀ

× × ×

ସେ ସାରଳାଚଣ୍ଡୀ ସାକ୍ଷାତେ ଅଟଇ ବୈଷ୍ଣବୀ
ତାହାର ପୁତ୍ର ମୁହିଁ ସାରଳା ଦାସ କବି ।
ସୁପ୍ରସନ୍ନେ ଆଜ୍ଞା ମୋତେ ଦେଲେ ଶାକମ୍ଭରୀ
ଲଭ ଭୁ ବଳାସ ମହାଭାରତ ବସ୍ତାର ।

(ସାः ମः ଅଦିପର୍ବ)

ଶ୍ରୀଚଣ୍ଡୀ ସାରଳାଙ୍କର ପାଦ ତଳେ ଦାସ
ଶୂଦ୍ର ମୁନି ଅପଣ୍ଡିତ ଶ୍ରୀ ସାରଳା ଦାସ
ସେ ଯାହା କହନ୍ତି ମୋତେ ମୁଁ ତାହା ଲେଖେ,

+ + +

(ଅଦିପର୍ବ)

ଝଙ୍କଡ଼ ପୁରରେ ତୁହି କହିବାକୁ ମୋତେ
ଲେଖନ ପତର ଅଣି ଦେଲୁ ନାଶ ଘେନେ
ତୁହି ଯାହା କହିଦେଉ ମୁହିଁ ତା ଲେଖଇ
ସର୍ବଦୀ ସାରଳା ଦାସ ମୂରୁଖ ଅଟଇ ।

ସାରଳା ମହା ଭାରତରୁ ମୁଁ ସାରଳା ଚଣ୍ଡୀଙ୍କ ସମ୍ବନ୍ଧରେ ଏହି କେତେ ଗୋଟି ମାତ୍ର ପଦ ଉଦ୍ଧାର କଲି । ସେହି ଗ୍ରନ୍ଥରେ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଏହିପରି ସାରଳା ଦେବୀଙ୍କର ଭୂରି ଭୂରି ସ୍ତୁତି ପ୍ରଶସ୍ତି ପୂରି ରହିଅଛି । ସିଦ୍ଧେଶ୍ୱର ଦାସ (ପରବର୍ତ୍ତୀ ନାମ ସାରଳା ଦାସ) ସିଦ୍ଧ ମାହେଶ୍ୱରୀ ସାରଳା ଚଣ୍ଡୀଙ୍କ ପ୍ରସାଦରୁ କବିତ୍ୱ ଲାଭ କରି ମହାଭାରତ ପରି ବିରାଟ ଗ୍ରନ୍ଥ ଲେଖିଥିବାର ସେ ଗ୍ରନ୍ଥରେ ଏବଂ ତାଙ୍କ ରଚିତ ଚଣ୍ଡୀ ପୁରାଣ ଓ ବିଲଙ୍କା ରାମାୟଣରେ ମଧ୍ୟ ଉଲ୍ଲେଖ କରିଅଛନ୍ତି । ସାରଳା ଦାସଙ୍କ ରଚିତ ଚଣ୍ଡୀ ପୁରାଣ ଯେ ବିଶୁଦ୍ଧ ଶାକ୍ତ ଗ୍ରନ୍ଥ ତାହା ଗ୍ରନ୍ଥର ନାମ କରଣରୁ ଏବଂ ବିଷୟ ବସ୍ତୁରୁ ମଧ୍ୟ ସହଜରେ ପ୍ରତିପାଦିତ ହୁଏ । ତାଙ୍କ ରଚିତ ବିଲଙ୍କା ରାମାୟଣରେ ମଧ୍ୟ ଶକ୍ତିର କର୍ତ୍ତୃତ୍ୱ ଈଶ୍ୱରତ୍ୱ ଓ ସାମର୍ଥ୍ୟ ବର୍ଣ୍ଣିତ ହୋଇଅଛି । ବିଲଙ୍କା ରାମାୟଣର ବର୍ଣ୍ଣିତ ବିଷୟ ବସ୍ତୁ ହେଉଅଛି ।—

ଲଙ୍କାର ଦଶଶିର ରାବଣକୁ ବଧ କରି ରାମ ଅଯୋଧ୍ୟାକୁ ଆସି ଅଭିଷେକ ହେବାବେଳେ ରାବଣକୁ ମାରିବାର କଷ୍ଟ ବର୍ଣ୍ଣନା କରି ନିଜର ପ୍ରୌଢ଼ି କରିଥିଲେ । ସୀତା ତାହା ସହ୍ୟ କରି ନ ପାରି ପ୍ରତିବାଦ କରିଥିଲେ ଏବଂ ସେ ନିଜେ ଦଶଶିର ରାବଣର ମୃତ୍ୟୁର କାରଣ ବୋଲି କହିଥିଲେ । ନିଜ ଶକ୍ତି ପରୀକ୍ଷା କରିବା ସକାଶେ ବିଲଙ୍କା ରାଜା ସହସ୍ରଶିର ରାବଣକୁ ବଧ କରିବାକୁ ରାମଙ୍କୁ ସୀତା ପ୍ରବର୍ତ୍ତାଇ ଥିଲେ । ରାମ ଅଭିଷେକ ବନ୍ଦ କରି ସହସ୍ରଶିର ରାବଣକୁ ବଧ କରିବାକୁ ଯାଇଥିଲେ । କିନ୍ତୁ ଶେଷରେ ରାମ ଏହି ସହସ୍ରଶିର ରାବଣକୁ ସଂହାର କରିବାକୁ ଅସମର୍ଥ ହୋଇ ହନୁମାନଙ୍କୁ ପ୍ରେରଣ କରି ସୀତାଙ୍କୁ ବିଲଙ୍କ ରାଜ୍ୟକୁ ଆନୟନ କରିଥିଲେ । ସୀତାଙ୍କ ରୂପ ଦର୍ଶନରେ ସହସ୍ରଶିର ରାବଣର

ଧୈର୍ଯ୍ୟ ଚ୍ୟୁତ ହୋଇ ବାଲ୍ମୀକି ନଷ୍ଟ ହେଲା । ଫଳରେ ରାମ ଅନ୍ୱେଷଣରେ ସେହୁ ରାବଣକୁ ବଧ କରିଥିଲେ । ବାଲ୍ମୀକି ରାମାୟଣରୁ ଭିନ୍ନ ଭିନ୍ନ ସ୍ଥାନରୁ ଏହି ବିଷୟ ବସ୍ତୁର ପ୍ରତିପାଦନ ସକାଶେ କେତେକ ପଦ ତଳେ ଉଦ୍ଧାର କରୁଅଛୁ ।

"ବଶିଷ୍ଠଙ୍କ ଗୃହିଁ ବୋଲୁଛନ୍ତି ରଘୁବୀର
ଅନେକ କଷ୍ଟରେ ମୁହିଁ ମାରିଲି ଅସୁର ।
ପର୍ବତ ବୁହାଇ ସିନ୍ଧୁ ମଧ୍ୟେ କଲି ବନ୍ଧ
କୁବୀର ସମର କଲି ରାଜା ଦଶକନ୍ଧ ।
ଅନେକ କଷ୍ଟରେ ମଲି ବୁଝ ଲଙ୍କସାଇଁ
ଶୁଣି ଉପହାସ କରି ବୋଲନ୍ତି ବୈଦେହୀ ।
କାର୍ଯ୍ୟ ନ କରଣ କମା ପ୍ରଶଂସି ହେଉଛ
କେଉଁ ଦିନ ରାବଣକୁ ତୁମ୍ଭେ ମାରିଅଛ ।
ତାହାଶୁଣି ରଘୁନାଥ ହୋଇଲେ ମଉନ
ହନୁକୁ ଗୃହିଁଣ ଆଜ୍ଞା ଦେଲେ ରଘୁନାନ ।
× × × ×
ହସିଣ ଜାନକୀ ଦେବୀ ବୋଲନ୍ତି ବଚନ
ରାବଣ ବଧିଲ କାହି କହ କେଉଁଦିନ ?
ଶ୍ରୀରାମ ବୋଇଲେ ସତ୍ୟ ହୋଇଲ କି ବାଇ
ଭୁଲିଗଲି କି ଅସୁରପୁରେ ଥିଲି ବନ୍ଦୀ ।
× × × ×
ଜାନକୀ ବୋଇଲେ ପ୍ରଭୁ ପ୍ରତିଜ୍ଞା ନ କରି
ମୁହିଁ ନ ମାଇଲେ କାହିଁ ମରନ୍ତା ଅସୁର ।
× × × ×


Digitized by srujan ka@gmail.com

ଏମନ୍ତ ପ୍ରତିଜ୍ଞା ଯେ ଅଛି ରଘୁସାଇଁ
ଲଙ୍କାର ରାବଣକୁ ବଧ କରି ଯାଇଁ ।

× × × ×

ଶୁଣି ବୋଲେ ଦେବଗଣ ଯୋଡ଼ି ବେନିକର
ନଇଲେ ଜାନକୀ କେବେଁ ନ ମରେ ଅସୁର ।

× × × ×

ଜାନକୀ ନଇଲେ କେବେଁ ନ ମରେ ଅସୁର
ଅଯୋଧ୍ୟାରୁ ଅଣ୍ଣ ଯାଇ ପବନ କୁମର ।

× × × ×

ଏମନ୍ତେ ବହୁତ ସ୍ତୁତି କଲେ ଦେବଗଣ
ଜାନକୀ ବୋଇଲେ କିଷ୍ଟେ ମାରିବ ରାବଣ ।

× × × ×

ଶ୍ରୀରାମ ବୋଇଲେ ମାରି ନ ପାରିଲି ମୁହିଁ
ମୋର ଶରମାନ ସବୁ ଗଲା ବ୍ୟର୍ଥ ହୋଇ ।

× × × ×

ଅପୂର୍ବ ମୂରତି ଧରିଲେକ ବଇଦେହୀ
ଅସୁର ଆଗରେ ଜନ୍ମ ହେଲେ ଦେବୀ ଯାଇଁ,
କନ୍ଦର୍ପର ପଞ୍ଚଶର ଅଙ୍ଗରେ ବାଜିଲା
ଦେଖୁଦେଖ ଦୈତ୍ୟତନୁ ଅତୁର ହୋଇଲା,

× × × ×

ବଳବୀର୍ଯ୍ୟ ରାଜାର ଯେ ପଡ଼ିଲା ମିଳାଇ
ଅନଳ ଲଗିଲେ ଯେସନେ ଘୃତ ତରଳଇ,

× × × ×

ପ୍ରାଣ ଘୁଣ୍ଟ ଅସୁର ଯେ ଷଣ୍ଢଙ୍କ ଭୂମିରେ ।
ଦେହ ଭାର ବହାଇବି ମେରୁର ଆକାରେ ।"

ବିଲଙ୍କା ରାମାୟଣ ମଧ୍ୟ ସାରଳା ଦାସଙ୍କର ମୌଳିକ କୃତି ନୁହେଁ । ସଂସ୍କୃତରେ ରଚିତ ଅଦ୍ଭୁତ ରାମାୟଣର ବିଷୟବସ୍ତୁ ଗ୍ରହଣ କରି ବିଲଙ୍କା ରାମାୟଣ ରଚନା କରିଥିଲେ । ମହାଭାରତ ଓ ଚଣ୍ଡୀ ପୁରାଣ ପରି ବିଲଙ୍କା ରାମାୟଣ ମଧ୍ୟ ସଂସ୍କୃତ ଗ୍ରନ୍ଥର ଅନୁବାଦ ନୁହେ । ସଂସ୍କୃତ ଗ୍ରନ୍ଥରୁ ବିଷୟବସ୍ତୁ ଗ୍ରହଣ କଲେ ମଧ୍ୟ ସାରଳା ଦାସ ପ୍ରତ୍ୟେକ ଗ୍ରନ୍ଥରେ ନୂତନ ନୂତନ ବିଷୟବସ୍ତୁ ସଂଯୋଜନ କରି ନିଜର ମୌଳିକତା ପ୍ରତିପାଦନ କରିଅଛନ୍ତି ।

ଏହିସବୁ କାରଣରୁ ନିଶ୍ଚିତଭାବରେ ପ୍ରମାଣିତ ହୁଏ ଯେ, ସିଦ୍ଧ ଶାକ୍ତପୀଠ ଝଙ୍କଡ଼ରେ ସିଦ୍ଧେଶ୍ୱର ଦାସ ସାରଳା ଚଣ୍ଡୀଙ୍କର ଜଣେ ଶାକ୍ତତାନ୍ତ୍ରିକ ସାଧକ ଥିଲେ । ସାରଳା ଦାସଙ୍କର ପ୍ରଥମ ନାମ ଥିଲା ସିଦ୍ଧେଶ୍ୱର ଦାସ ।

"ମୁହିଁ ସିଦ୍ଧେଶ୍ୱର ଦାସ ମୂର୍ଖ ଅପଣ୍ଡିତ
ଶ୍ରୀହିଙ୍ଗୁଳା ପରସନ୍ନେ କଲଇଁ ବ୍ୟକତ ।
× × × ×
ରାମାୟଣ ବୃତ୍ତାନ୍ତକୁ ନିରନ୍ତରେ ଘୋଷ,
ଶ୍ରୀରାମଚରଣେ ଭଜେ ସିଦ୍ଧେଶର ଦାସ

(ବିଲଙ୍କା ରାମାୟଣ)

ସେହି ସିଦ୍ଧେଶ୍ୱର ଦାସ ମାହେଶ୍ୱରୀ ସାରଳାଙ୍କର ଅନୁକମ୍ପା ଓ ଅନୁଗ୍ରହଲାଭ କରି କବିତ୍ୱ ଶକ୍ତି ଅର୍ଜନ କରିଥିବାରୁ ପରେ ନିଜକୁ ସାରଳା ଦାସ ନାମରେ ପରିଚିତ କରାଇଥିଲେ ଏବଂ ସେହି ନାମ ଗ୍ରନ୍ଥମାନଙ୍କରେ ଉଲ୍ଲେଖ କରିଥିଲେ । ଆଧୁନିକ ଶିକ୍ଷିତ ସମାଜ ତାନ୍ତ୍ରିକ ଶାକ୍ତ ଧର୍ମର ନାମ ଶ୍ରବଣରେ ନାସିକା

କୁଣ୍ଠନ କରିଥାନ୍ତି । ଲୋକଙ୍କର ଏହି ଭ୍ରାନ୍ତ ଧାରଣା ଦୂର କରିବା ସକାଶେ ଏଠାରେ ମୁଁ ଶାକ୍ତ ଧର୍ମର ମୌଳିକ ତତ୍ତ୍ୱ ଅଲୋଚନା କରୁଅଛି ।

ବ୍ରହ୍ମ ହେଉଛନ୍ତି ଦ୍ୱିବିଧ—୧—ପରବ୍ରହ୍ମ ୨—ଅପର ବ୍ରହ୍ମ "ଦ୍ୱେ ବ୍ରହ୍ମଣୀ ବେଦିତବ୍ୟେ ପରଞ୍ଚା ପରଞ୍ଚ (ମାଣ୍ଡୁକ୍ୟୋ-ପନିଷଦ) ପର ଓ ଅପର ବ୍ରହ୍ମ ଉଭୟେ ସମସ୍ତ ଜାଣିବାର ବିଷୟ । ପର ବ୍ରହ୍ମ ହେଉଛନ୍ତି ନିର୍ଗୁଣ ବ୍ରହ୍ମ । ଏହି ନିର୍ଗୁଣ ହେଉଛନ୍ତି ନିରୁପାଧିକ, ନିର୍ବିକଳ୍ପ ଏବଂ ପ୍ରକୃତିରୁ ଭିନ୍ନ । "ନିର୍ଗୁଣଃ ପ୍ରକୃତିତରନ୍ୟଃ" (ସାରଦା ତିଳକ)

ନିର୍ଗୁଣ ବ୍ରହ୍ମରେ ନାମରୂପ ପ୍ରଭୃତି କୌଣସି ଧର୍ମ ବା ଗୁଣର ଅରୋପ ହୋଇପାରେ ନାହିଁ ଏବଂ ନିର୍ଗୁଣ ବ୍ରହ୍ମ କାହାରିକୁ ଅପେକ୍ଷା କରେ ନାହିଁ; ଏହା ହେଉଛି ପରିପୂର୍ଣ୍ଣତମ । ଅପର ବ୍ରହ୍ମ ହେଉଛନ୍ତି ସଗୁଣ ବ୍ରହ୍ମ, ଜଗନ୍ନିୟନ୍ତା ଏବଂ ଜଗଦାତ୍ମକ ।

"ଜଗନ୍ନିୟନ୍ତା ଜଗଦାତ୍ମକଶ୍ଚ" (କେନୋପନିଷତ୍) ।

ତାନ୍ତ୍ରିକମାନେ ନିର୍ଗୁଣ ବ୍ରହ୍ମଙ୍କୁ ନିଷ୍କଳ ଶିବ ଏବଂ ସଗୁଣ ବ୍ରହ୍ମଙ୍କୁ ସକଳ ଶିବ ବୋଲି କହିଥାନ୍ତି । "ସକଲୋ ନିଷ୍କଳଶ୍ଚୈବ ଶିବୋ ଜ୍ଞେୟଃ ସନାତନଃ" (ମହାନିର୍ବାଣତନ୍ତ୍ର) ।

"ଅସ୍ତି ଦେବଃ ପରବ୍ରହ୍ମ ସ୍ୱରୂପୀ ନିଷ୍କଳଃ ଶିବଃ ।
ସକଳଃ ସର୍ବକର୍ତ୍ତା ଚ ସର୍ବେଶୋ ନିର୍ମଳୋଦୟଃ ।

(ତାରା ରହସ୍ୟ)

ପରବ୍ରହ୍ମ ସ୍ୱରୂପୀ ଦେବତା ହେଉଛନ୍ତି ନିଷ୍କଳ ଶିବ । ସକଳ ଶିବ ଜଗତର ସୃଷ୍ଟି ସ୍ଥିତି ପ୍ରଳୟରେ ଥାନ୍ତି; ସେ ହେଉଛନ୍ତି

ଈଶ୍ୱର, ସମସ୍ତଙ୍କର ପ୍ରଭୁ ଯେତେବେଳେ ନିର୍ଗୁଣ ବ୍ରହ୍ମଙ୍କର ଶକ୍ତିର ବା ପ୍ରକୃତିର ବିକାଶ ହୋଇ ନାହିଁ ସେତେବେଳେ ଶିବ ହେଉଛନ୍ତି ନିଷ୍କଳ । ଯେତେବେଳେ ଶିବଙ୍କର ସୃଷ୍ଟି କରିବା ସକାଶେ ଇଚ୍ଛା ହୁଏ ସେତେବେଳେ କଳା ବା ପ୍ରକୃତିର ଉଦ୍ଭବ ହୁଏ । ସତ୍ତ୍ୱ ରଜ ଓ ତମୋଗୁଣର ସାମ୍ୟାବସ୍ଥାକୁ ପ୍ରକୃତି ବା କଳା କହୁଥାନ୍ତି । ଏହି ପ୍ରକୃତି ବା କଳା ସହିତ ମିଳିତ ବୋଲି ଶିବଙ୍କୁ ସକଳ ଶିବ କହୁଥାନ୍ତି । (ମୁଁ ଏଠାରେ ନିଷ୍କଳ ଶିବ ପରିବର୍ତ୍ତିରେ ପରବ୍ରହ୍ମ ଶବ୍ଦ ସୁଖବୋଧ ସକାଶେ ବ୍ୟବହାର କରୁଅଛି ।)

ମାୟା ହେଉଛି ପରବ୍ରହ୍ମଙ୍କର ଶକ୍ତି । ଏହି ମାୟା ସମସ୍ତ ଅଘଟନ ଘଟାଇ ପାରେ ବୋଲି ମାୟାକୁ ଅଘଟନ ଘଟନ ପଟୀୟସୀ ବୋଲି କହନ୍ତି । ମାୟାଦ୍ୱାରା ପରବ୍ରହ୍ମଙ୍କର ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ଆଚ୍ଛାଦିତ ହେଲେ ତାଙ୍କର ସ୍ୱାତନ୍ତ୍ର୍ୟ ଓ ଅସୀମତା ସୀମାବଦ୍ଧ ହୋଇଯାଏ । ସୂର୍ଯ୍ୟ ଯେପରି ନିଜ ରଶ୍ମି ଦ୍ୱାରା ଜଳ ଆକର୍ଷଣ କରି ମେଘସୃଷ୍ଟି କରେ ଏବଂ ନିଜ ସୃଷ୍ଟ ମେଘଦ୍ୱାରା ନିଜେ ଆଚ୍ଛାଦିତ ହୁଏ ପରବ୍ରହ୍ମ ମଧ୍ୟ ସେହିପରି ନିଜସୃଷ୍ଟ ମାୟାଦ୍ୱାରା ନିଜେ ଆଚ୍ଛାଦିତ ହୁଅନ୍ତି । ଏହି ମାୟାଦ୍ୱାରା ପରବ୍ରହ୍ମଙ୍କର ସମସ୍ତ ଶକ୍ତି ଆଚ୍ଛାଦିତ ଓ ସଂକୁଚିତ ହେଲେ ବ୍ରହ୍ମ ଜୀବରୂପ ଧାରଣ କରନ୍ତି ଅର୍ଥାତ୍ ସସୀମ ପରିମିତ ମୂର୍ତ୍ତି ଧାରଣ କରନ୍ତି ।

ଜୀବଠାରେ ବ୍ରହ୍ମ ସ୍ୱରୂପ ବିଦ୍ୟମାନ ଥାଏ କିନ୍ତୁ ଅବିଦ୍ୟା ଅର୍ଥାତ୍ ମାୟାର ଆବରଣ ଯୋଗୁଁ ଜୀବ ଏହା ବିସ୍ମୃତ ହୁଏ । ଅବିଦ୍ୟାର ଆବରଣ ଦୂର ହେଲେ ଜୀବ ନିଜର ଶିବ ସ୍ୱରୂପ ଲାଭ କରେ । ଏହି ବ୍ରହ୍ମତ୍ୱ ଲାଭ ଜୀବର ପରମ ପୁରୁଷାର୍ଥ "ବିଜ୍ଞାନ-ମାନନ୍ଦଂ ବ୍ରହ୍ମ" (କେନୋପନିଷଦ୍) ବ୍ରହ୍ମ ହେଉଛନ୍ତି ଚିତ୍ ସ୍ୱରୂପ ଓ ଆନନ୍ଦ ସ୍ୱରୂପ । ଅବିଦ୍ୟାଦ୍ୱାରା ବ୍ରହ୍ମଙ୍କର ଚିତ୍ରୂପ (ଜ୍ଞାନରୂପ)

ଅବୃତ ରହିଥାଏ ବୋଲି ଜୀବ ଯେପରି ତାହା ଜାଣିପାରେ ନାହିଁ ସେହିପରି ବ୍ରହ୍ମଙ୍କର ଆନନ୍ଦ ରୂପ ମଧ୍ୟ ଦୁଃଖଦ୍ୱାରା ଅବୃତ ହୋଇଥାଏ ବୋଲି ଜୀବ ତାହା ଜାଣିପାରେ ନାହିଁ ।

ପରାଶକ୍ତି ଶକ୍ତିମାନ୍ ପରବ୍ରହ୍ମଠାରେ ସର୍ବଦା ଅବସ୍ଥିତ କରେ । ଏହି ଶକ୍ତି ସୃଷ୍ଟି, ସ୍ଥିତି, ଲୟ କରିଥାଏ ।

"ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁଂ
ନ ଚେଦେବଂ ଦେବୋ ନ ଖଳୁ କୁଶଳଃ ସ୍ପନ୍ଦିତୁମପି"
(ଆନନ୍ଦ ଲହରୀ)

ବ୍ରହ୍ମ ବା ଶିବ ଶକ୍ତି ଯୁକ୍ତ ହେଲେ ପ୍ରଭୁତ୍ୱ ବା ଈଶ୍ୱରତ୍ୱ ପ୍ରାପ୍ତି ସକାଶେ ସମର୍ଥ ହୁଅନ୍ତି । ଶକ୍ତିଯୁକ୍ତ ନ ହେଲେ ବ୍ରହ୍ମ ବା ଶିବଙ୍କର ସ୍ପନ୍ଦନ କରିବାର କ୍ଷମତା ରହେ ନାହିଁ । ଯାହାର ଐଶ୍ୱର୍ଯ୍ୟ ଅଛି ସେ ଈଶ୍ୱର । ଐଶ୍ୱର୍ଯ୍ୟ ହେଉଛି ଗୋଟିଏ ଧର୍ମ । (ଧର୍ମଗୁଣ ଓ ଶକ୍ତି ଏକ ପଦାର୍ଥ) । ପରବ୍ରହ୍ମଙ୍କର ଐଶ୍ୱର୍ଯ୍ୟ ରହିଲେ ନିର୍ଗୁଣତ୍ୱ ସମ୍ଭବପର ନୁହେ । ତେଣୁ ନିର୍ଗୁଣ, ଅର୍ଥାତ୍ ଗୁଣ ରହିତ ପରବ୍ରହ୍ମଙ୍କର ଐଶ୍ୱର୍ଯ୍ୟ ନାହିଁ । ଶକ୍ତିଯୁକ୍ତ ହେଲେ ଶିବ ବା ବ୍ରହ୍ମ ସଂସାରର ସୃଷ୍ଟି, ସ୍ଥିତି, ଲୟ କରିଥାନ୍ତି । ଅର୍ଥାତ୍ ଶିବ ବା ବ୍ରହ୍ମ ଶକ୍ତିଯୁକ୍ତ ହେଲେ ଈଶ୍ୱର ହୁଅନ୍ତି । ଶକ୍ତି କେବଳ ପରବ୍ରହ୍ମଙ୍କର ଈଶ୍ୱରତ୍ୱ ବା ଐଶ୍ୱର୍ଯ୍ୟ ସମ୍ପାଦନ କରିଥାଏ । ତେଣୁ ଶକ୍ତି ହେଉଛନ୍ତି ଈଶ୍ୱରୀ ।

"ଯସ୍ୟା ଦେବ୍ୟା ବିରହିତଃ ଶିବୋଽପିହି ନିରର୍ଥକଃ"
(ଅଗସ୍ତ୍ୟ ସଂହିତା)

ଏହି ଶକ୍ତିଦେବୀଙ୍କଦ୍ୱାରା ଶୂନ୍ୟ ହେଲେ ଶିବ ବା ପରବ୍ରହ୍ମଙ୍କର ସାର୍ଥକତା ରହେ ନାହିଁ ଅର୍ଥାତ୍ ସେ କୌଣସି କାର୍ଯ୍ୟ କରି ପାରନ୍ତି ନାହିଁ ।

ଏହି ଶକ୍ତି ବୈଦାନ୍ତିକମାନଙ୍କର ସ୍ୱୀକୃତ ମାୟାଠାରୁ ଭିନ୍ନ । ଏହି ଶକ୍ତି ହେଉଛନ୍ତି ଚିଦ୍‌ରୂପା କିନ୍ତୁ ବୈଦାନ୍ତିକମାନଙ୍କର ଜଡ଼ ସ୍ୱଭାବା ପ୍ରକୃତି ବା ମାୟା ନୁହେ । ସୂତ ସଂହିତାରେ କଥିତ ଅଛି :—

"ସଦାକାର ପରାନନ୍ଦା ସଂସାରୋଚ୍ଛେଦକାରଣୀ
ସା ଶିବା ପରମା ଦେବୀ ଶିବାଭିନ୍ନା ଶିବଙ୍କରୀ,
ଶିବାଭିନ୍ନା ତସ୍ମା ଭିନ୍ନଂ ଶିବୋଽପିହ ନିରର୍ଥକଃ"

ସେହି ମଙ୍ଗଳମୟୀ ଶକ୍ତିରୂପିଣୀ ଦେବୀ ସତ୍‌ସ୍ୱରୂପା, ପରମାନନ୍ଦ ସ୍ୱରୂପା ଏବଂ ମୁକ୍ତିଦାୟିନୀ । ଏହି ଶକ୍ତି ଦେବୀ ଶିବ ବା ବ୍ରହ୍ମଙ୍କଠାରୁ ଭିନ୍ନ ନୁହେ । ଶିବ ବା ବ୍ରହ୍ମ ଶକ୍ତିହୀନ ହେଲେ ତାଙ୍କର ଜଗତରେ କୌଣସି ପ୍ରୟୋଜନ ରହେ ନାହିଁ ।

କାରଣ ବ୍ୟତୀତ କାର୍ଯ୍ୟ ହୋଇପାରେ ନାହିଁ । ସଂସାରର ରଚନା ପ୍ରଭୃତି ମଧ୍ୟ କାର୍ଯ୍ୟ । ସଂସାର ପୃଥିବୀ ପ୍ରଭୃତି କାର୍ଯ୍ୟସମୂହ କାରଣ ବ୍ୟତୀତ ଉତ୍ପନ୍ନ ହୋଇପାରେ ନାହିଁ । ତେଣୁ ଏହି ଅସଙ୍ଗତି ଦୂର କରିବା ସକାଶେ ଶିବ (ବ୍ରହ୍ମା) ବା ଶକ୍ତିଙ୍କୁ ସଂସାରର କାରଣ ବୋଲି ପ୍ରମାଣ ସାହାଯ୍ୟରେ କଳ୍ପନା କରି ହୋଇଥାଏ । ବ୍ରହ୍ମ ବା ଶକ୍ତି କେହି ଚର୍ମଚକ୍ଷୁ ଦ୍ୱାରା ଦୃଶ୍ୟ ହୁଅନ୍ତି ନାହିଁ । ବୈଦାନ୍ତିକମାନେ କଳ୍ପନା କରନ୍ତି ଯେ— ଚିତ୍ ସ୍ୱରୂପ ବ୍ରହ୍ମଙ୍କର ଧର୍ମ ବା ଶକ୍ତି ହେଉଛନ୍ତି ମାୟା । ସେହି ମାୟା ହେଉଛନ୍ତି ଅବିଦ୍ୟା ଓ ଜଡ଼ ସ୍ୱଭାବା । ଏହି ମାୟା ହେଉଛନ୍ତି ଜଗତର ଉପାଦାନ କାରଣ ଏବଂ ପରବ୍ରହ୍ମ ହେଉଛନ୍ତି ଜଗତର ବିବର୍ତ୍ତୋପାଦାନ । ଜଡ଼ସ୍ୱଭାବା ମାୟା ଜଗତର ଉପାଦାନ ବୋଲି ଜଗତ ମଧ୍ୟ ଜଡ଼ ଏବଂ ମାୟା ମିଥ୍ୟା ବୋଲି ଜଗତ ମଧ୍ୟ ମିଥ୍ୟା ।


Digitized by srujan ka@gmail.com

ଶାକ୍ତ ତାନ୍ତ୍ରିକମାନେ ବୈଦାନ୍ତିକମାନଙ୍କର ଏହି ମତକୁ ସ୍ୱୀକାର କରନ୍ତି ନାହିଁ । ସେମାନେ କହନ୍ତି—ମାୟାକୁ ଅବିଦ୍ୟା, ଓ ଜଡ଼ କହିଲେ ତାହା ଚିତ୍‌ର ଧର୍ମ ହେବ, ନା, ଅଚିତ୍ ଜଡ଼ର ଧର୍ମ ହେବ ?

ଧର୍ମ ଓ ଧର୍ମୀ ଅଭିନ୍ନ । (ଧର୍ମ ଯାହାଠାରେ ରହେ ତାହାକୁ ଧର୍ମୀ କହନ୍ତି ଯଥାଃ—ମାୟା—ଧର୍ମ, ବ୍ରହ୍ମ—ଧର୍ମୀ) । ମାୟା ଚିତ୍‌ର ଧର୍ମ ହେଲେ ଜଡ଼ ସ୍ୱଭାବା ହୋଇ ପାରିବ ନାହିଁ । ବୈଦାନ୍ତିକମାନେ ମାୟାକୁ ଚିତ୍ ଧର୍ମ ବୋଲି ସ୍ୱୀକାର କରନ୍ତି କିନ୍ତୁ ତାହାକୁ ଅଚିତ୍ ବା ଜଡ଼ ସ୍ୱଭାବ କହନ୍ତି—ଏହା ଯୁକ୍ତି—ସଙ୍ଗତ ନୁହେ । ମାୟାକୁ ଅଚିତ୍ ବା ଜଡ଼ର ଧର୍ମ ବୋଲି କହିଲେ ଚେତନ ଓ ଜଡ଼ ବୋଲି ଦୁଇଟି ପଦାର୍ଥର ସ୍ୱୀକାର କରିବାକୁ ହେବ । ଫଳରେ ଅଦ୍ୱୈତବାଦର ଲୋପ ହେବ ।

"ମାୟାଂ ତୁ ପ୍ରକୃତିଂ ବିଦ୍ୟାନ୍ମାୟିନଂ ତୁ ମହେଶ୍ୱରଂ ।"

(ଗୀତା)

ମାୟାକୁ ପ୍ରକୃତି ବୋଲି ଏବଂ ମହେଶ୍ୱର ବା ବ୍ରହ୍ମଙ୍କୁ ମାୟୀ ଅର୍ଥାତ୍ ମାୟାର ଅଧିଷ୍ଠାନ ବୋଲି ଜାଣିବ । ମାୟାକୁ ଅଚେତନର ଧର୍ମ କହିଲେ ଗୀତାର ଏହି ବଚନ ସହିତ ବିରୋଧ ମଧ୍ୟ ହେବ । ତେଣୁ ଗତ୍ୟନ୍ତର ନ ଥିବାରୁ ମାୟାକୁ ଚିତ୍‌ର ଧର୍ମ ବୋଲି ଅବଶ୍ୟ ସ୍ୱୀକାର କରିବାକୁ ହେବ । ଗୁଣ ଓ ଗୁଣୀର ଭେଦ ନାହିଁ । ତେଣୁ ଚିତ୍ ଓ ଶକ୍ତି ଭିନ୍ନ ନୁହନ୍ତି । ତେଣୁ ଶକ୍ତି ହେଉଛନ୍ତି ଚିତ୍ ସ୍ୱରୂପ କିନ୍ତୁ ଜଡ଼—ସ୍ୱଭାବ ନୁହେ । ଗୁଣ ମଧ୍ୟ ଗୁଣୀକୁ, ଧର୍ମ ମଧ୍ୟ ଧର୍ମୀକୁ, ଶକ୍ତି ମଧ୍ୟ ଶକ୍ତି-ମାନକୁ (ଗୁଣ ଧର୍ମ ଶକ୍ତି ଏକ ପଦାର୍ଥ) ତ୍ୟାଗ କରି ରହିପାରେ

ନାହିଁ । ଗନ୍ଧ ହେଉଅଛି ପୃଥିବୀର ଗୁଣ । ଯେଉଁଠାରେ ଗନ୍ଧ ରହିବ ସେହିଠାରେ ପୃଥିବୀ ମଧ୍ୟ ରହିବ, ତାହାର ଅନ୍ୟଥା ହେବନାହିଁ । ଅଗ୍ନିର ଦାହିକା ଶକ୍ତି ରହିଅଛି । ଯେଉଁଠାରେ ଦାହିକା ଶକ୍ତି ରହିବ, ସେଠାରେ ଅଗ୍ନି ମଧ୍ୟ ରହିବ, ଏଥିର ଅନ୍ୟଥା ହେବ ନାହିଁ । ସେହିପରି ଶକ୍ତିମାନ୍ ବ୍ରହ୍ମ ଓ ଶକ୍ତି ଭିନ୍ନ ନୁହନ୍ତି— "ଶକ୍ତି ଶକ୍ତି ମତୋରଭେଦଃ ।" କିନ୍ତୁ ବ୍ୟବହାର କାଳରେ ଗୁଣ ଗୁଣୀ, ଧର୍ମ୍ମ ଧର୍ମ୍ମୀ, ଶକ୍ତି ଶକ୍ତିମାନ ମଧ୍ୟରେ ଭେଦ କଳ୍ପନା କରି ହୋଇଥାଏ । ସେହିପରି ଧର୍ମ୍ମୀ ହେଉଛନ୍ତି ବ୍ରହ୍ମ ବା ଶିବ ଏବଂ ଧର୍ମ୍ମ ହେଉଛନ୍ତି ଶକ୍ତି । ବ୍ରହ୍ମ ଓ ଶକ୍ତି ଦୁହେଁ ଚିତ୍ ସ୍ୱରୂପ ଓ ଅଭିନ୍ନ ହେଲେ ମଧ୍ୟ ବ୍ୟବହାର ସକାଶେ ଦୁହିଁଙ୍କ ମଧ୍ୟରେ ଭେଦ କଳ୍ପନା କରାଯାଇଥାଏ ।

ଶିବ ଓ ଶକ୍ତି ଜଗତର ଉପାଦାନ କାରଣ ହୋଇ ପାରନ୍ତି ନାହିଁ । ଉପାଦାନ କାରଣର ଗୁଣ କାର୍ଯ୍ୟରେ ସର୍ବଦା ରହିଥାଏ— (ଯଥା ସୂତା ଓ ଲୁଗା) । ଶିବ ଓ ଶକ୍ତି ହେଉଛନ୍ତି ଚିତ୍‌ସ୍ୱରୂପ କିନ୍ତୁ ଜଗତ୍ ହେଉଅଛି ଜଡ଼ସ୍ୱଭାବ । ତେଣୁ ଶିବ ଓ ଶକ୍ତିଙ୍କୁ ଜଗତର ଉପାଦାନ କାରଣ କହି ହେବ ନାହିଁ । କଦାପି ଆଲୋକରୁ ଅନ୍ଧକାରର ଉତ୍ପତ୍ତି ହୁଏ ନାହିଁ । ସେହିପରି ଚିତ୍‌ସ୍ୱରୂପ ଶିବ ଓ ଶକ୍ତିରୁ ଅଚିତ୍ ଅର୍ଥାତ୍ ଜଡ଼ସ୍ୱଭାବ ଜଗତର ଉତ୍ପତ୍ତି ଅସମ୍ଭବ । ଯେପରି ସୂକ୍ଷ୍ମ ବଟ ବୀଜରେ ବୃହତ୍ ବଟ ବୃକ୍ଷ ସୂକ୍ଷ୍ମରୂପରେ ଅବସ୍ଥିତ ଥାଏ କିନ୍ତୁ ପରେ ଆଲୋକ ଜଳ ଓ ମୃତ୍ତିକାଦିର ସହାୟତାରେ ବଟ ବୃକ୍ଷର ଏହି ସୂକ୍ଷ୍ମରୂପ ବିସ୍ତାରିତ ହୋଇ କ୍ରମେ କ୍ରମେ ବୃହତ ବଟବୃକ୍ଷରେ ପରିଣତ ହୁଏ, ସେହିପରି ପ୍ରଳୟକାଳରେ ଜଗତ୍ ସଙ୍କୁଚିତ ହୋଇ ଚିତ୍ ସ୍ୱରୂପ ଶିବଙ୍କଠାରେ ସୂକ୍ଷ୍ମରୂପରେ ଅବସ୍ଥିତ ଥାଏ କିନ୍ତୁ ପରେ ସୃଷ୍ଟିକାଳରେ ଅଙ୍ଗର ବିସ୍ତାରଦ୍ୱାରା ବୃହତ୍

ଜଗତ୍‌ରୂପରେ ପ୍ରକାଶିତ ହୁଏ । ବଣିକ ପ୍ରତ୍ୟହ ପ୍ରାତଃକାଳରେ ପଣ୍ୟବସ୍ତୁ ବିସ୍ତାର କରିଥାଏ ଏବଂ ରାତ୍ରରେ ସଙ୍କୁଚିତ କରିଥାଏ । ବଣିକର ଯେପରି ଏହି ପଣ୍ୟବସ୍ତୁର ପ୍ରସାରଣ ଓ ସଙ୍କୋଚ କରିବାର କର୍ତ୍ତୃତ୍ୱ ଥାଏ, ସେହିପରି ସକଳ ଶିବଙ୍କର ବା ସଗୁଣ ବ୍ରହ୍ମଙ୍କର କେବଳ ଜଗତର ପ୍ରସାରଣ ଓ ସଙ୍କୋଚ କରିବାର କର୍ତ୍ତୃତ୍ୱ ରହିଅଛି । ସଙ୍କୋଚ ଓ ପ୍ରସାରଣ ହେଉଛି ଗୋଟିଏ ଗୋଟିଏ କ୍ରିୟା । ନିର୍ଗୁଣ ବ୍ରହ୍ମଙ୍କଠାରେ କୌଣସି କ୍ରିୟା ସମ୍ଭବ-ପର ନୁହେ । ତେଣୁ ନିର୍ଗୁଣ ବ୍ରହ୍ମ ଜଗତ୍‌ର ସୃଷ୍ଟି ସ୍ଥିତିସଂହାର କରି ପାରନ୍ତି ନାହିଁ । ସଗୁଣ ବ୍ରହ୍ମଙ୍କର ଶକ୍ତି ଏହି କାର୍ଯ୍ୟମାନ ସମ୍ପାଦନ କରିଥାଏ ।

ବ୍ରହ୍ମଙ୍କ ଅନନ୍ତ ଶକ୍ତିର ଉଲ୍ଲେଖ ରହିଅଛି "ପରାସ୍ୟ ଶକ୍ତି ର୍ବିବିଧୈବଶ୍ରୂୟତେ" ଦେବୀ ସୂକ୍ତରେ ବ୍ରହ୍ମଙ୍କର ପର ଶକ୍ତି ବିବିଧ ପ୍ରକାର ବୋଲି ଶୁଣାଯାଏ । ଦେବୀ ଭାଗବତରେ କଥିତ ଅଛି—

"ଶକ୍ତିଃ କରୋତି ବ୍ରହ୍ମାଣ୍ଡଂ ସାବୈ ପାଳୟତେଽଖିଳଂ,
ଇଚ୍ଛୟା ସଂହରତ୍ୟେଷା ଜଗଦେତଚ୍ଚରାଚରଂ ।
ନ ବିଷ୍ଣୁଃ ନ ହରଃ ଶକ୍ରୋ ନ ବ୍ରହ୍ମା ନଚ ପାବକଃ
ନ ସୂର୍ଯ୍ୟୋ ବରୁଣଃ ଶକ୍ତାଃ ସ୍ୱେ ସ୍ୱେ କାର୍ଯ୍ୟେ କଥଞ୍ଚନ ।
ତୟା ଯୁକ୍ତା ହି କୁର୍ବନ୍ତି ସ୍ୱାନି କାର୍ଯ୍ୟାଣିତେ ସୁରାଃ ।
କାରଣଂ ସୈବ କାର୍ଯ୍ୟେଷୁ ପ୍ରତ୍ୟକ୍ଷେଣାବଗମ୍ୟତେ
ବସ୍ତୁଜାଳଂ ଶକ୍ତିହୀନଂ ଶକ୍ତଂ କର୍ତ୍ତୁଂ ନ କଞ୍ଚନ ।
ଶକ୍ତଂ ତୁ ପରମେଶାନ ଶକ୍ତ୍ୟାଯୁକ୍ତଂ ଯଦାଭବେତ୍"

ଶକ୍ତି ନିଜର ଇଚ୍ଛାନୁସାରେ ଏହି ଚରାଚର ଜଗତର ସୃଷ୍ଟି, ସ୍ଥିତି, ସଂହାର କରିଥାନ୍ତି । ବ୍ରହ୍ମା, ବିଷ୍ଣୁ, ଶିବ, ଇନ୍ଦ୍ର, ସୂର୍ଯ୍ୟ, ବରୁଣ

ମଧ୍ୟ ଶକ୍ତିହୀନ ହେଲେ ନିଜ ନିଜ ନିତ୍ୟକାର୍ଯ୍ୟ କରିବାକୁ ସକ୍ଷମ ହୁଅନ୍ତି ନାହିଁ । ଏମାନେ ସମସ୍ତେ ଶକ୍ତିଯୁକ୍ତ ହେଲେ ନିଜ ନିଜ କାର୍ଯ୍ୟ କରିପାରନ୍ତି । ଶକ୍ତି ହେଉଛି ସମସ୍ତ କାର୍ଯ୍ୟର କାରଣ— ଏହା ପ୍ରତ୍ୟକ୍ଷରେ ଜ୍ଞାତ ହୋଇଥାଏ । କୌଣସି ବସ୍ତୁ ଶକ୍ତିହୀନ ହେଲେ କୌଣସି କାର୍ଯ୍ୟ କରିପାରେ ନାହିଁ, କିନ୍ତୁ ଶକ୍ତିଯୁକ୍ତ ହେଲେ ସମସ୍ତ କାର୍ଯ୍ୟ କରିପାରେ ।" କବିତ୍ୱ ଶକ୍ତି ନ ଥିଲେ କେହି କବିତା କରିପାରେ ନାହିଁ ଏହିପରି ଅନ୍ୟାନ୍ୟ କାର୍ଯ୍ୟରେ ମଧ୍ୟ ଶକ୍ତି ନ ଥିଲେ କିଛି କରିହୁଏ ନାହିଁ । ତେଣୁ ଶକ୍ତି ସମସ୍ତ କାର୍ଯ୍ୟର କାରଣ ।

"ମୋର ଏ କାମ କରିବାକୁ ଶକ୍ତି ଅଛି ଏବଂ ଏ କାମ କରିବାକୁ ମୋର ଶକ୍ତି ନାହିଁ । ଏହା ମୋର ଶକ୍ତିର ଅତୀତ" ଏହିପରି ବାକ୍ୟ ମଧ୍ୟ ଲୋକେ ବ୍ୟବହାର କରନ୍ତି ଏବଂ ଶକ୍ତିକୁ ସର୍ବଦା ଅନୁଭବ କରନ୍ତି । ତେଣୁ ଶକ୍ତି ହେଉଛି ସମସ୍ତ କାର୍ଯ୍ୟର କାରଣ । କିନ୍ତୁ ଏହି ଶକ୍ତି ପ୍ରତ୍ୟେକ ପଦାର୍ଥରେ କାର୍ଯ୍ୟୋତ୍ପତ୍ତିର ପରେ ଅନୁଭୂତ ହୁଏ, କାର୍ଯ୍ୟୋତ୍ପତ୍ତିର ପୂର୍ବରୁ ଅନୁଭୂତ ହୁଏ ନାହିଁ । ଏହି କଥା ବିଦ୍ୟାରଣ୍ୟ ସ୍ୱାମୀ ପଞ୍ଚଦଶୀରେ କହିଛନ୍ତି—

"ନିସ୍ତତ୍ତ୍ୱା କାର୍ଯ୍ୟଗମ୍ୟାସ୍ୟ ଶକ୍ତି ର୍ମାୟାଗ୍ନି ଶକ୍ତିବତ୍
ନ ଶକ୍ତିଃ କ୍ୱଚିତ୍ କଶ୍ଚିତ୍ ବୁଧ୍ୟତେ କାର୍ଯ୍ୟତଃ ପୁରା"

ବ୍ରହ୍ମଙ୍କ ଶକ୍ତି-ମାୟା ଅଗ୍ନିର ଶକ୍ତିପରି ନିସ୍ତତ୍ତ୍ୱ ଏବଂ କାର୍ଯ୍ୟ ଗମ୍ୟ । କେହି କେବେ କାର୍ଯ୍ୟର ପୂର୍ବରୁ ଶକ୍ତିକୁ ଅବଗତ ହୁଅନ୍ତି ନାହିଁ । ଏହି ଶକ୍ତି ପ୍ରତ୍ୟେକ ବସ୍ତୁରେ ଅବସ୍ଥିତ । "ମୋର ଏହା କରିବାର ଶକ୍ତି ଅଛି କିମ୍ବା ନାହିଁ ଏକଥା ସମସ୍ତେ କହି ଥାନ୍ତି । ଏହାଦ୍ୱାରା ଜୀବଗତ ଶକ୍ତିର ଅସ୍ତିତ୍ୱ ସମସ୍ତେ ଅନୁଭବ କରିଥାନ୍ତି । ଦେବୀ ଭାଗବତରେ ସୁନ୍ଦର ଶ୍ଳୋକଟିଏ ରହିଅଛି—

ରୁଦ୍ରହୀନଂ ବିଷ୍ଣୁହୀନଂ ନ ବଦନ୍ତି ଜନାସ୍ତଥା
ଶକ୍ତିହୀନଂ ଯଥା ସର୍ବେ ପ୍ରବଦ୍ୟନ୍ତି ନରାଧମାଃ ।

ଅଧମ ଲୋକଙ୍କୁ ଲୋକେ ଶକ୍ତିହୀନ ବୋଲି କହିଥାନ୍ତି କିନ୍ତୁ କେହି କେବେ କାହାରିକୁ ବିଷ୍ଣୁହୀନ ରୁଦ୍ରହୀନ ବା ବ୍ରହ୍ମହୀନ ବୋଲି କହନ୍ତି ନାହିଁ । ତେଣୁ ପ୍ରତ୍ୟେକ ବସ୍ତୁରେ ଶକ୍ତି ଅବସ୍ଥିତ କରିଅଛି ଏବଂ ସେହି ଶକ୍ତିର କାର୍ଯ୍ୟକାରିତା ରହିଅଛି । ସେହି ଶକ୍ତି ହେଉଛି କର୍ତ୍ତ୍ରୀ । ତେଣୁ ଶକ୍ତିର ଉପାସନା କର୍ତ୍ତବ୍ୟ । ସେହି ଶକ୍ତି ହେଉଛନ୍ତି କେବଳ ଉପାସ୍ୟ ଦେବତା ଏବଂ ଉପାସନାର ଯୋଗ୍ୟ ।

ଉପାସ୍ୟ ଦେବତାର ରୂପର ଧ୍ୟାନ ଗୁଣ ନାମ କୀର୍ତ୍ତନ— ପ୍ରଭୃତି ହେଉଛି ଉପାସନା । କିନ୍ତୁ ଶକ୍ତି ରହିତ ନିର୍ଗୁଣ ବ୍ରହ୍ମଙ୍କର ନାମ ରୂପ ଗୁଣ ପ୍ରଭୃତି କିଛି ନାହିଁ । ତେଣୁ ନିର୍ଗୁଣ ବ୍ରହ୍ମଙ୍କର ରୂପର ଧ୍ୟାନ, ସ୍ତୁତି ନାମର କୀର୍ତ୍ତନ ପ୍ରଭୃତି ସମ୍ଭବପର ନୁହେ । ତେଣୁ ଶକ୍ତି ରହିତ କେବଳ ନିର୍ଗୁଣ ଶିବ ଉପାସନାର ଯୋଗ୍ୟ ନୁହନ୍ତି । ଯୋଗିନୀ ତନ୍ତ୍ରରେ କଥିତ ଅଛି—

"ଶକ୍ତ୍ୟା ବିନା ଶିବେ ସୂକ୍ଷ୍ମେ ନାମଧାମ ନ ବିଦ୍ୟତେ ।"

ଶକ୍ତି ରହିତ, ସୂକ୍ଷ୍ମ ଶିବଙ୍କଠାରେ ନାମ, ଧାମ, ରୂପ, ଗୁଣ ପ୍ରଭୃତି ରହିପାରେ ନାହିଁ ତେଣୁ ତାହାଙ୍କର ଉପାସନା କରିହେବ ନାହିଁ । ଶ୍ରୁତିରେ ମଧ୍ୟ କଥିତ ଅଛି—

ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସାସହ । (କଠୋପନିଷଦ୍)

ବାକ୍ୟ ଓ ମନ ଯେଉଁ ବ୍ରହ୍ମଙ୍କୁ ନ ପାଇ ନିବୃତ୍ତ ହୁଅନ୍ତି ଅର୍ଥାତ୍ ଯାହାଙ୍କର ରୂପ ଓ ଗୁଣ ଅଛି ତାହାଙ୍କ ବିଷୟରେ ବାକ୍ୟ ପ୍ରଯୁକ୍ତ ହୋଇପାରେ ଏବଂ ମନ ମଧ୍ୟ ତାହାଙ୍କ ବିଷୟ ଚିନ୍ତାକରି ପାରେ, ଶକ୍ତି ରହିତ ନିର୍ଗୁଣ ବ୍ରହ୍ମ ହେଉଛନ୍ତି ଅବାଙ୍ମନସ

ଗୋଚର । ତାଙ୍କର ରୂପ ଗୁଣ ପ୍ରଭୃତି କିଛିନାହିଁ । ସେ ହେତୁ ଛନ୍ତି ଅନାମ, ଅରୂପ, ନିର୍ଗୁଣ, ଅଣାକାର । ତେଣୁ ତାହାଙ୍କ ବିଷୟରେ ବାକ୍ୟ ମଧ୍ଯ ପ୍ରଯୁକ୍ତ ହୋଇପାରେ ନାହିଁ ଏବଂ ମନ ମଧ୍ଯ ତାହାଙ୍କର ଚିନ୍ତା କରିପାରେ ନାହିଁ । ସେହି ନିର୍ଗୁଣ ବ୍ରହ୍ମ ଉପନିଷଦର "ନେତି, ନେତି" ସେ ଏହା ନୁହନ୍ତି, ସେ ଏହା ନୁହନ୍ତି" ଏହିପରି ସର୍ବ ନିଷେଧର ଶେଷ ରୂପରେ ଜ୍ଞେୟ । ତେଣୁ ନିର୍ଗୁଣ ବ୍ରହ୍ମ ଜ୍ଞାନର ବିଷୟ ହୋଇ ପାରନ୍ତି କିନ୍ତୁ ସେ ଉପାସନା ପ୍ରଭୃତି କର୍ମର ବିରୋଧୀ । ସେହି ସଗୁଣ ବ୍ରହ୍ମ ଉପାସ୍ୟ ହୋଇ ପାରନ୍ତି ନାହିଁ କି ନିର୍ଗୁଣ ବ୍ରହ୍ମଙ୍କର ଉପାସନା ହୋଇପାରେ ନାହିଁ ।

"ଶିବୋଽପି ଶବତାଂ ଯାତି କୁଣ୍ଡଲିନ୍ୟା ବିବର୍ଜିତଃ"

(ଦେବୀ ଭାଗବତ)

କୁଣ୍ଡଲିନୀ ଅର୍ଥାତ୍ ଶକ୍ତିଦ୍ୱାରା ବିବର୍ଜିତ ହେଲେ ଶିବ ଶବ ରୂପ ପ୍ରାପ୍ତ ହୁଅନ୍ତି । ଅର୍ଥାତ୍ ଶବର ଯେପରି କୌଣସି କ୍ରିୟା ବା ବ୍ୟବହାର ପ୍ରଭୃତି ରହେନାହିଁ, ସେହିପରି ଶକ୍ତି ରହିତ ଶିବ ବା ବ୍ରହ୍ମଙ୍କର କୌଣସି କ୍ରିୟା, କାର୍ଯ୍ୟକାରିତା ଏବଂ ବ୍ୟବହାର ପ୍ରଭୃତି ରହେ ନାହିଁ ।

ଅଣାକାର ନିର୍ଗୁଣ ବ୍ରହ୍ମଙ୍କର ଗ୍ରହଣ ସକାଶେ ମନକୁ ଅତି କଷ୍ଟରେ ପ୍ରେରଣ ଓ ଚାଳନ କଲେ ମଧ୍ଯ ଅଣାକାର ବ୍ରହ୍ମଙ୍କଠାରେ ମନ କ୍ଷଣେ ମାତ୍ର ସ୍ଥିର ଭାବରେ ଅବସ୍ଥିତ କରି ପାରେନାହିଁ ।

"କ୍ଲେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତ ଚେତସାଂ"

( ଗୀତା )

ଅବ୍ୟକ୍ତ ଅର୍ଥାତ୍ ନାମରୂପ ବିବର୍ଜିତ ନିର୍ଗୁଣ ନିସ୍ପୃହ ପଦାର୍ଥରେ ଚିତ୍ତ ଆସକ୍ତ କଲେ ଅଧିକ କ୍ଲେଶ ହୁଏ । ତେଣୁ ମନକୁ ସ୍ଥିର କରିବାକୁ ହେଲେ କୌଣସି ଗୋଟିଏ ରୂପର କଳ୍ପନା କରିବାକୁ ହୁଏ । ପରଂବ୍ରହ୍ମର ଯେଉଁ ରୂପ କଳ୍ପିତ ହୁଏ ତାହା ହେଉଛି ସଗୁଣ ବ୍ରହ୍ମ ଏବଂ ନିର୍ଗୁଣ ବ୍ରହ୍ମରେ ସଗୁଣତ୍ୱ ଆରୋପ କାରଣ ହେଉଛି ଶକ୍ତି ।

"ଧ୍ୟାନାବସ୍ଥାୟାଂ କାଳେ ତୁ ନବର୍ତ୍ତନ୍ତେ ମନୋସ୍ଥିତଃ"

ନିର୍ଗୁଣ ହେଉଛନ୍ତି ସମସ୍ତ ଗୁଣର ରହିତ । ରୂପ, ସୌନ୍ଦର୍ଯ୍ୟ ପ୍ରଭୃତି ମଧ୍ୟ ଗୋଟିଏ ଗୁଣ । ନିର୍ଗୁଣ ବ୍ରହ୍ମଙ୍କଠାରେ ଏହି ସବୁ ଗୁଣ ଅଭାବ ରହିଅଛି । ତେଣୁ ନିର୍ଗୁଣ ବ୍ରହ୍ମରେ ମନର ରତି ବା ଅହ୍ଲାଦ ଜାତ ହୋଇପାରେ ନାହିଁ ବୋଲି ଧ୍ୟାନ ମଧ୍ୟ ଅସମ୍ଭବ । ଏହି ଅବସ୍ଥାରେ ବଳପୂର୍ବକ ମନକୁ ନିର୍ଗୁଣ ବ୍ରହ୍ମଙ୍କ ଧ୍ୟାନରେ ପ୍ରବର୍ତ୍ତିତ କଲେ ମନ କିଛି କ୍ଷଣ ସ୍ଥିର ରହିପାରେ କିନ୍ତୁ ଦୀର୍ଘକାଳ ପର୍ଯ୍ୟନ୍ତ ବ୍ରହ୍ମଙ୍କଠାରେ ମନର ସ୍ଥିରତା ଓ ଧ୍ୟାନ ସ୍ଥାୟୀ ହୋଇ ରହିପାରେ ନାହିଁ । ତେଣୁ ଧ୍ୟାନ ସକାଶେ ନିର୍ଗୁଣ ବ୍ରହ୍ମ କଳ୍ପନାର ସାର୍ଥକତା ମଧ୍ୟ ନାହିଁ ।

ସାକାରୋପାସନା କିମ୍ବା ନିର୍ଗୁଣ ବ୍ରହ୍ମଙ୍କର ରୂପକଳ୍ପନା ସମ୍ବନ୍ଧରେ ନାନାବିଧ ଯୁକ୍ତିତର୍କ ଉପସ୍ଥିତ ହୋଇଥାଏ ।

"ଉପାସକାନାଂ ଭେଦାର୍ଥଂ ବ୍ରହ୍ମଣୋ ରୂପକଳ୍ପନା"

ଉପାସକଙ୍କର ଭେଦ ଅନୁସାରେ ବ୍ରହ୍ମଙ୍କର ରୂପକଳ୍ପନା ହୋଇଥାଏ । ଭିନ୍ନ ଭିନ୍ନ ଉପାସକମାନେ ନିଜ ନିଜର ଉପାସନା ସକାଶେ ବ୍ରହ୍ମଙ୍କର ରୂପକଳ୍ପନା କରିଥାନ୍ତି ।

କେହି କେହି ଯୁକ୍ତି କରିଥାନ୍ତି ଯେ, ବ୍ରହ୍ମଙ୍କର ରୂପ ନାହିଁ, ତେଣୁ ଉପାସକଙ୍କର କଳ୍ପିତ ରୂପ ବ୍ରହ୍ମ ନୁହେ କିନ୍ତୁ ଏହି ତର୍କ

ନିରର୍ଥକ । ବ୍ରହ୍ମ ଅନନ୍ତରୂପର ଆଧାର, ରୂପମୟ ସମସ୍ତ ଜଗତ ତାହାଙ୍କର କୁକ୍ଷିଗତ । ତେଣୁ ଉପାସକ ଯେଉଁ କଳ୍ପନା କରୁ ନା କାହିଁକି ତାହା ହେବ ବ୍ରହ୍ମର ରୂପ । ବ୍ରହ୍ମ ହେଉଛନ୍ତି ବିଶ୍ୱରୂପ—

"ସର୍ବତଃ ପାଣିପାଦଂ ତତ୍ ସର୍ବତୋଽକ୍ଷିଶିରୋମୁଖଂ
ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି" (ଗୀତା)

ବ୍ରହ୍ମଙ୍କ ସବୁଆଡ଼େ ପାଦ ଓ ପାଣି, ସବୁଆଡେ ଚକ୍ଷୁ, ସବୁଆଡ଼େ କର୍ଣ୍ଣ । ସେ ସମସ୍ତ ବିଶ୍ୱକୁ ଆବୃତ କରି ରହିଛନ୍ତି । ସେ ହେଉଛନ୍ତି—

"ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ, ସହସ୍ରପାତ୍
ସାଭୂମିଂ ସର୍ବତଃ ସ୍ପୃତ୍ୱା (ଋକ୍‌ବେଦ)

ବ୍ରହ୍ମଙ୍କର ସହସ୍ର ସହସ୍ର ଶିର, ସହସ୍ର ସହସ୍ର ଚକ୍ଷୁ, ସହସ୍ର ସହସ୍ର ପାଦ, ସେ ସବୁଆଡ଼େ ପୃଥିବୀକୁ ସ୍ପର୍ଶ କରି ରହି-ଅଛନ୍ତି । ଅର୍ଜ୍ଜୁନ ଦିବ୍ୟ ନେତ୍ର ଲାଭ କରିବାରୁ ସେହି ବିଶ୍ୱରୂପ ଦର୍ଶନ କରି କହିଥିଲେ—

"ଅନନ୍ତ ବାହୋଦର ବକ୍ତ୍ର ନେତ୍ରଂ
ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପଂ ।
ନାନ୍ତଂ ନ ମଧ୍ୟଂ ନପୁନ ସ୍ତବାଦିଂ
ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପଂ । ଗୀତା ।

ହେ ବିଶ୍ୱେଶ୍ୱର ବିଶ୍ୱନେତ୍ର । ତୁମ୍ଭର ବାହୁ, ଉଦର, ମୁଖ ଏବଂ ନେତ୍ର ମଧ୍ୟ ଅସଂଖ୍ୟ, ମୁଁ ତୁମ୍ଭଙ୍କୁ ସବୁଠାରେ ଦେଖୁଅଛି । ତୁମ୍ଭେ ଅନନ୍ତ । ତୁମ୍ଭର ଅନ୍ତ, ମଧ୍ୟ ଏବଂ ଆଦି, ମଧ୍ୟ କିଛି ଦେଖି ପାରୁନାହିଁ ।

ପଶ୍ୟାମି ଦେବାଂସ୍ତବ ଦେବ ଦେହେ
ସର୍ବାଂସ୍ତଥା ଭୂତ ବିଶେଷ ସଂଘାନ୍

ବ୍ରହ୍ମାଣମୀଶଂ କମଳାସନସ୍ଥ—
ମୃଷିଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ୍ (ଗୀତା)

ହେ ଦେବ ତୁମ୍ଭ ଦେହରେ ସମସ୍ତ ଦେବତା ସମସ୍ତ ପ୍ରାଣୀ ତୁମ୍ଭ ନାଭିକମଳରେ ଅବସ୍ଥିତ ବ୍ରହ୍ମା, ଶିବ, ସମସ୍ତ ଋଷି ଏବଂ ସର୍ପମାନଙ୍କୁ ଦର୍ଶନ କରୁଅଛୁ । ଅର୍ଜ୍ଜୁନ ଭଗବାନ ଶ୍ରୀକୃଷ୍ଣଙ୍କର ପରମଭକ୍ତ । ସେ ସଖ୍ୟଭାବରେ ଭଗବାନଙ୍କୁ ଉପାସନା କରୁଥିଲେ । ସେହି ଭକ୍ତ ଶିରୋମଣି ଅର୍ଜ୍ଜୁନ ଭଗବାନଙ୍କର ବିଶ୍ୱରୂପ ଦର୍ଶନ କରି ଭୟରେ ଭୀତତ୍ରସ୍ତ ହୋଇଥିଲେ ଏବଂ ଭଗବାନଙ୍କୁ ନିଜ ରୂପ ଦର୍ଶନ କରାଇବା ସକାଶେ ପ୍ରାର୍ଥନା କରିଥିଲେ—

"ଭୟେନ ଚ ପ୍ରବ୍ୟଥିତଂ ମନୋମେ
ତଦେବ ମେ ଦର୍ଶୟ ଦେବ ରୂପଂ (ଗୀତା)

ଭୟରେ ମୋ ମନ ବିଶେଷ ଭାବରେ ବ୍ୟଥିତ ହେଉଛି । ହେ ଦେବ ମୋତେ ସେହିରୂପ ଦର୍ଶାଅ । ତେଣୁ ଅନନ୍ତ ବିଶ୍ୱରୂପର ଧ୍ୟାନ ଧାରଣାରେ ମନର ଏକାଗ୍ରତା ରହେ ନାହିଁ । ସଗୁଣ ବ୍ରହ୍ମ ହେଉଛନ୍ତି ସମସ୍ତଙ୍କ ସେବ୍ୟାର ବିଷୟ । ଶକ୍ତି ହେଉଛନ୍ତି ଏହି ସଗୁଣତ୍ୱର ହେତୁ । ତେଣୁ ଶକ୍ତି ହେଉଛନ୍ତି ସେବ୍ୟ ।"

"ଶିବଃକର୍ତ୍ତା ଶିବୋଭୋକ୍ତା ଶିବଃ ସର୍ବମିଦଂଜଗତ୍
ଏହି ସଗୁଣ ଶିବ ହେଉଛନ୍ତି କର୍ତ୍ତା ଓ ଭୋକ୍ତା । ସେହି ସଗୁଣ ଶିବ ହେଉଛନ୍ତି ସମସ୍ତ ଜଗତ୍ ।
ଦେବୀ ଧାତ୍ରୀଚ ଭୋକ୍ତ୍ରୀଚ ଦେବୀ ସର୍ବମିଦଂଜଗତ୍"
(ପଶୁରାମ କଳ୍ପସୂତ୍ର)

ଶକ୍ତିଦେବୀ ହେଉଛନ୍ତି ଜଗତର ଧାରଣକର୍ତ୍ତ୍ରୀ ଓ ଭୋଗ କର୍ତ୍ତ୍ରୀ । ସେହି ଦେବୀ ହେଉଛନ୍ତି ସମସ୍ତ ଜଗତ୍ । ଜଗତ୍ ହେଉଛି ବ୍ରହ୍ମଙ୍କର ଆତ୍ମା ବା ସ୍ୱରୂପ । ତେଣୁ ବ୍ରହ୍ମ ହେଉଛନ୍ତି ଜଗଦାତ୍ମକ । ଏହି ଜଗନ୍ନିୟନ୍ତା ବ୍ରହ୍ମ ବ୍ରହ୍ମା, ବିଷ୍ଣୁ, ଶିବ ରୂପରେ ଅନେକ ପ୍ରକାର । ଏମାନେ ପ୍ରତ୍ୟେକ ନିଜ ନିଜ ଭକ୍ତ ପ୍ରତି ଅନୁଗ୍ରହ କରିବା ସକାଶେ ଇଚ୍ଛୁକ ହୋଇ ଭକ୍ତଙ୍କର ବାସନା ଭେଦରୁ ଏବଂ କାର୍ଯ୍ୟ ଭେଦରୁ ଭିନ୍ନ ଭିନ୍ନ ମୂର୍ତ୍ତି ଗ୍ରହଣ କରିଥାନ୍ତି । ତେଣୁ ବ୍ରହ୍ମଙ୍କ ରୂପ ଅନନ୍ତ, ଏବଂ ଯେ କୌଣସି ଦେବତାର ଉପାସନା ମଧ୍ୟ ବ୍ରହ୍ମଙ୍କର ଉପାସନା ।

"ଯତୀନାଂ ମନ୍ତ୍ରିଣାଂଚୈବ ଜ୍ଞାନିନାଂ ଯୋଗିନାଂ ତଥା
ଧ୍ୟାନପୂଜା ନିମିତ୍ତଂହି ତନୁର୍ଗୃହ୍ଣାତି ମାୟୟା ।
( ସୁପ୍ରଭେଦତନ୍ତ୍ରେ )

ଯତି, ସନ୍ନ୍ୟାସୀ, ମନ୍ତ୍ରସାଧକ, ଜ୍ଞାନୀ, ଏବଂ ଯୋଗୀ ପ୍ରଭୃତିଙ୍କ ଧ୍ୟାନ ଓ ପୂଜାନିମିତ୍ତ ବ୍ରହ୍ମା ମାୟାକୁ ଆଶ୍ରୟ କରି ଶରୀର ଧାରଣ କରିଥାନ୍ତି ।

ସଗୁଣ ବ୍ରହ୍ମଙ୍କର ସୃଷ୍ଟି, ସ୍ଥିତି, ପ୍ରଳୟ, ଅନୁଗ୍ରହ, ନିଗ୍ରହ ପ୍ରଭୃତି ବ୍ୟାପାର ବା ଶକ୍ତି ମଧ୍ୟ ଅନନ୍ତ । ସେହି ମାୟା ବା ଶକ୍ତିକୁ ଆଶ୍ରୟ ନ କରି ବ୍ରହ୍ମ ମୂର୍ତ୍ତି ଗ୍ରହଣ କରିପାରନ୍ତି ନାହିଁ । ସତ୍ତ୍ୱଗୁଣାତ୍ମକ ବିଷ୍ଣୁ, ରଜୋଗୁଣାତ୍ମକ ବ୍ରହ୍ମା, ତମୋଗୁଣାତ୍ମକ ଶିବ ପ୍ରଭୃତି ମଧ୍ୟ ଗୁଣ ଯୁକ୍ତ ହୋଇଥିବାରୁ ଶକ୍ତିର ବିକାଶ । ଏହି କଳ୍ପିତମୂର୍ତ୍ତି ମାନଙ୍କେ ହେଉଛନ୍ତି ଶକ୍ତି ।

"ଦେବ୍ୟା ଯୟାଃ ଖିଳମିଦଂ ଜଗଦାତ୍ମ ଶକ୍ତ୍ୟା
ନିଃଶେଷ ଦେବଗଣ ଶକ୍ତି ସମୂହ ମୂର୍ତ୍ତ୍ୟା ।"


Digitized by srujan ka@gmail.com

ଶକ୍ତିଦେବୀ ସମସ୍ତ ଦେବତାଙ୍କର ଶକ୍ତିର ସମଷ୍ଟି । ସେ ସମସ୍ତ ଜଗତକୁ ନିଜ ଶକ୍ତିରେ ବ୍ୟାପି ରହିଛନ୍ତି । ତେଣୁ ସେ ଶକ୍ତି ମଧ୍ୟ ଅନନ୍ତ ।

ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଶକ୍ତିର ଅଧୀନ । ସେହି ଶକ୍ତି କେବଳ ଚତୁର୍ବର୍ଗ ପ୍ରଦାନ କରେ । ମୁକ୍ତି ମଧ୍ୟ ହେଉଛି ଶକ୍ତିଙ୍କର କାର୍ଯ୍ୟ, ଶିବଙ୍କର କାର୍ଯ୍ୟ ନୁହେ ।

"ମୋଚକତ୍ୱ ଶକ୍ତି ମନ୍ତ୍ରେଣ ଶିବସ୍ୟ ତଦଯୋଗେନ ମୋଚନକର୍ତ୍ତୃତ୍ୱସ୍ୟା ଅନ୍ୱୟବ୍ୟତରେକାଭ୍ୟାଂ ଶକ୍ତ୍ୟାଦେବସ୍ୱୀକର୍ତ୍ତୁଂ ଯୁକ୍ତତ୍ୱାତ—

ଶକ୍ତ୍ୟୋଯୟା ସଶମ୍ଭୁ ର୍ଭୁକ୍ତୌ ମୁକ୍ତୌଚ ପଶୁଗଣ ସ୍ୟାସ୍ୟ,
ତାମେନାଂ ଶଦ୍ରୂପାମଦ୍ୟାଂ ସର୍ବାତ୍ମନାଽସ୍ମି ନତା ।
(ଭୋଜରାଜକୃତତତ୍ତ୍ୱ ପ୍ରକାଶ)
କର୍ତ୍ତ ସ୍ୱାତନ୍ତ୍ର୍ୟଂହି କର୍ତ୍ତୃତ୍ୱଂ, ସ୍ୱତନ୍ତ୍ରଚକର୍ତ୍ତା ଇତି
ପାଣିନି ସୂତ୍ରାତ୍ । ତଚ ଶକ୍ତିଗତମେବ, ତଥାଚ
ଶକ୍ତିସୂତ୍ରଂ—ଶକ୍ତିଃ ସ୍ୱତନ୍ତ୍ରା, କଶ୍ଚସିଦ୍ଧି ହେତୁ ।" ଇତି,

ମୋଚକତ୍ୱ ହେଉଛି ଗୋଟିଏ ଧର୍ମ ବା ଶକ୍ତି, ତେଣୁ ଶିବ ବ୍ରହ୍ମ ମୋଚକ ହୋଇପାରନ୍ତି ନାହିଁ । ଶକ୍ତି କେବଳ ମୋଚନ କରିପାରେ । ମୋଚନ କରିବା ଗୋଟିଏ କ୍ରିୟା । ତେଣୁ ଶକ୍ତିଙ୍କର ମୋଚନ କ୍ରିୟାରେ କର୍ତ୍ତୃତ୍ୱ ସ୍ୱୀକାର କରିବା ଯୁକ୍ତି ଯୁକ୍ତ । ଏ ବିଷୟରେ ଶାସ୍ତ୍ର ବାକ୍ୟ ମଧ୍ୟ ରହିଅଛି । ଯେଉଁ ଶକ୍ତି ବଳରେ ଶିବ ବା ବ୍ରହ୍ମ ପଶୁଗଣଙ୍କର ଭୁକ୍ତି ଓ ମୁକ୍ତି ବିଷୟରେ ସମର୍ଥ ହୁଅନ୍ତି, ସେହି ଚୈତନ୍ୟ ସ୍ୱରୂପା ଆଦ୍ୟା ଶକ୍ତିଙ୍କୁ ପ୍ରଣାମ କରୁଅଛି । କ୍ରିୟା ସାଧନରେ ଯାହାର ସ୍ୱାତନ୍ତ୍ର୍ୟ ରହିଥାଏ ସେହି କର୍ତ୍ତା । ମୋଚନ କ୍ରିୟାରେ ବ୍ରହ୍ମଙ୍କର ସ୍ୱାତନ୍ତ୍ର୍ୟ ନାହିଁ; ସେ

ଶକ୍ତିର ଅଧୀନ । ମୋଚନ କ୍ରିୟାରେ ଶକ୍ତିଙ୍କର କେବଳ ସ୍ୱାତନ୍ତ୍ର୍ୟ ରହିଅଛି । ଶକ୍ତିସୂତ୍ରରେ ତାହା କଥିତ ହୋଇଛି—ଚିଦ୍‌ରୂପା ଶକ୍ତି ହେଉଛନ୍ତି ସ୍ୱତନ୍ତ୍ର, ସେ ହେଉଛନ୍ତି ବିଶ୍ୱସୃଷ୍ଟିର କାରଣ ।

ଏହି ଚିଦ୍‌ରୂପା ଶକ୍ତିର ଆରାଧନା କଲେ ମୁକ୍ତିଲାଭ ହୁଏ । ସେହି ଶକ୍ତି ନାନା ନାମ ରୂପ ଧାରଣ କରି ଜଗତରେ ସର୍ବତ୍ର ଅବସ୍ଥାନ କରିଛନ୍ତି ।

"ଯଚ୍ଚ କିଞ୍ଚିଦ୍ କ୍ୱଚିଦ୍ ବସ୍ତୁ ଦୃଶ୍ୟତେ ଶ୍ରୂୟତେଽପିବା
ଅନ୍ତର୍ବହିଶ୍ଚ ତତ୍ସର୍ବଂ ବ୍ୟାପ୍ୟାହଂ ସର୍ବଦା ସ୍ଥିତା
ନତଦସ୍ତି ମୟାତ୍ୟକ୍ତଂ ବସ୍ତୁ କିଞ୍ଚ ଚରାଚରଂ" (ଦେବୀଗୀତା)

"ଜଗତରେ ଯେ କୌଣସି ବସ୍ତୁ ଦୃଶ୍ୟ ହୁଏ ଏବଂ ଶ୍ରାବ୍ୟ ହୁଏ ସେ ସବୁ ବସ୍ତୁର ଅନ୍ତର ଓ ବାହ୍ୟ ମୁଁ ବ୍ୟାପି ରହିଅଛି । ସଚରାଚର ଜଗତରେ ମୋଦ୍ୱାରା ପରିତ୍ୟକ୍ତ କୌଣସି ବସ୍ତୁ ନାହିଁ ।" ତେଣୁ ଶକ୍ତି ସର୍ବବ୍ୟାପିନୀ ।

"ବିଦ୍ୟାଽବିଦ୍ୟେତି ଦେବ୍ୟାରୂପେ ଦେବ୍ୟାଜାନୀହିପାର୍ଥିବ"
ଏକୟାମୁଚ୍ୟତେ ଜନ୍ତୁର ନ୍ୟୟାବଧ୍ୟତେ ପୁନଃ"
(ଦେବୀ ଭାଗବତ)

"ଏହି ପରାଶକ୍ତିର ଦୁଇଟି ସ୍ୱରୂପ—୧ ବିଦ୍ୟା ୨—ଅବିଦ୍ୟା । ଏହି ପରା ଶକ୍ତି ଅବିଦ୍ୟାରୂପରେ ମୁକ୍ତି ପ୍ରଦାନ କରେ ଏବଂ ଅବିଦ୍ୟା—ରୂପରେ ଜୀବକୁ ବନ୍ଧ କରେ । ଚଣ୍ଡୀରେ ମଧ୍ୟ କଥିତ ଅଛି—"ସୈଷା ପ୍ରସନ୍ନା ବରଦା ନୃଣାଂ ଭବତି ମୁକ୍ତୟେ" ସେ ଶକ୍ତି ଦେବୀ ପ୍ରସନ୍ନ ହୋଇ ବରଦାନ କଲେ ଜୀବର ମୁକ୍ତି ହୁଏ ।"

"ଯସ୍ୟ ଯସ୍ୟ ପଦାର୍ଥସ୍ୟ ଯା ଯା ଶକ୍ତି ରୁଦୀରିତା
ସାତ୍ତୁ ସର୍ବେଶ୍ୱରୀ ଦେବୀ ସତ୍ତୁ ସର୍ବୋମହେଶ୍ୱରଃ"
(ବାମକେଶ୍ୱର ତନ୍ତ୍ର)

ପ୍ରତ୍ୟେକ ପଦାର୍ଥର ନିଜ ନିଜ ପ୍ରୟୋଜନ ସାଧନ ସକାଶେ ଉପଯୁକ୍ତ ସାମର୍ଥ୍ୟ ରହିଅଛି । ଏହି ସାମର୍ଥ୍ୟ ହେଉଛି ଶକ୍ତି । ଏହି ସମସ୍ତ ଶକ୍ତି ହେଉଛି ବିମର୍ଷଶକ୍ତି ବା ଅଦ୍ୟାଶକ୍ତିର ବିଭୂତି । ଶକ୍ତି ଶକ୍ତିମାନଙ୍କୁ ପରିତ୍ୟାଗ କରି ରହିପାରେ ନାହିଁ । ତେଣୁ ଶକ୍ତିର ଆଧାର ଶିବ ପ୍ରତ୍ୟେକ ବସ୍ତୁରେ ପ୍ରକାଶ ରୂପରେ ଅବସ୍ଥାନ କରନ୍ତି । ତେଣୁ ପ୍ରକୃତରେ ପ୍ରତ୍ୟେକ ବସ୍ତୁର ଧର୍ମ ବା ଗୁଣ ହେଉଛି ବିମର୍ଷଶକ୍ତିର ବିଭୂତି ଏବଂ ପ୍ରତ୍ୟେକ ବସ୍ତୁର ପ୍ରକାଶ ହେଉଛି ଶିବ ବା ବ୍ରହ୍ମଙ୍କର ବିଭୂତି । ତେଣୁ ପ୍ରତ୍ୟେକ ବସ୍ତୁରେ ଶିବ ଶକ୍ତିଙ୍କର ଅଧିଷ୍ଠାନ ରହିଅଛି । ଏହି ଶକ୍ତି ହେଉଛି ସ୍ୱୟଂ ଧର୍ମ ଓ ଧର୍ମୀ । ଶକ୍ତିରେ ନାମଧାମ ଶର୍ମ କର୍ମ ରହସ୍ୟ ଓ ପ୍ରଭୃତି ସମସ୍ତ ବିଷୟ ସମ୍ଭବ ହୋଇଥାଏ ଏବଂ ସେ ହେଉଛନ୍ତି ସର୍ବବ୍ୟାପିକା । ଦେବୀ ଭାଗବତରେ କଥିତ ଅଛି—

'ଏବଂ ସର୍ବଗତା ଦେବୀ ସାକ୍ଷାଦ୍ବ୍ରହ୍ମେତି ବିବଚ୍ୟତେ ।
ସଗୁଣା ନିର୍ଗୁଣାଚେତି ଦ୍ୱିବିଧୋକ୍ତା ମନୀଷିଭିଃ ।
ସଗୁଣା ରାଗିଭିଃ ସେବ୍ୟା ନିର୍ଗୁଣାତୁ ବିରାଗିଭିଃ ।
ଧର୍ମାର୍ଥକାମ ମୋକ୍ଷାଣାଂ ସ୍ୱାମିନୀ ସା ନିରାକୁଳା
ଦଦାତି ବାଞ୍ଛିତା ନର୍ଥାନାର୍ଚ୍ଚିତା ବିଧିପୂର୍ବକଂ ।"

ଏହିପରି ସର୍ବତ୍ର ଅବସ୍ଥିତ ଶକ୍ତି ଦେବୀଙ୍କୁ ବ୍ରହ୍ମ ବୋଲି ବିବେଚନା କରାଯାଇଥାଏ । ଏହି ଶକ୍ତି ଦୁଇ ପ୍ରକାର, ସଗୁଣା ଓ ନିର୍ଗୁଣା । ସଗୁଣ ଶକ୍ତିକୁ ସଂସାରାସକ୍ତ ଲୋକମାନେ ସେବା କରନ୍ତି ଏବଂ ସଂସାର ପ୍ରତି ଅନାସକ୍ତ ଲୋକମାନେ ନିର୍ଗୁଣ ଶକ୍ତିକୁ ସେବା କରନ୍ତି । ସେହି ଶକ୍ତି ହେଉଛନ୍ତି ଧର୍ମ ଅର୍ଥ କାମ

ଓ ମୋକ୍ଷର ପ୍ରଭୁ । ସ୍ୱତନ୍ତ୍ର ବିଧିପୂର୍ବକ ଉପାସନା କଲେ ସେ ବାଞ୍ଛିତ ଫଳ ପ୍ରଦାନ କରନ୍ତି ।

"ମନସ୍ତ୍ୱଂ ବ୍ୟୋମ ତ୍ୱଂ ମରୁତ୍ତବସି ମରୁତ୍ସାରଥିରସି
ତ୍ୱମାପସ୍ତ୍ୱଂ ଭୂମି ସ୍ତ୍ୱୟିପରିଣତାୟାଂ ନହି ପରଂ ।
ତ୍ୱମେବ ସ୍ୱାତ୍ମାନଂ ପରିଣମୟିତୁଂ ବିଶ୍ୱ ବପୁଷା
ଚିଦାନନ୍ଦାକାରଂ ହର ମହିଷି ଭାବେନ ବିଭୃଷେ ।"
(ଆନନ୍ଦ ଲହରୀ)

ହେ ହର ମହିଷି ଦୁର୍ଗେ ତୁମ୍ଭେ ହେଉଛ ମନ, ତୁମ୍ଭେ ଆକାଶ, ତୁମ୍ଭେ ବାୟୁ, ତୁମ୍ଭେ ଅଗ୍ନି, ତୁମ୍ଭେ ଭୂମି । ତୁମ୍ଭେ ପରିଣତ ହୋଇ ସ୍ଥୂଳ ଦେହ ଧାରଣ କଲେ ଅଉ କିଛୁ ଅବଶିଷ୍ଟ ରହେ ନାହିଁ । ଅର୍ଥାତ୍ ବ୍ରହ୍ମାଣ୍ଡ ସ୍ୱରୂପ ଧାରଣ କର । ତୁମ୍ଭେ ନିଜକୁ ବିଶ୍ୱ ରୂପରେ ପରିଣତ କରିବା ନିମିତ୍ତ ନିଜ ଇଚ୍ଛାରେ ଚିନ୍ମୟ ଓ ଆନନ୍ଦମୟ ମୂର୍ତ୍ତି ଧାରଣ କର ।" ତେଣୁ ଶକ୍ତିଦେବୀ ନିଜକୁ ସଂସାର ସ୍ୱରୂପରେ ପ୍ରକାଶ କରିଥାନ୍ତି । ଚଣ୍ଡୀରେ ମଧ କଥିତ ଅଛି—

"ତ୍ୱଂ ବୈଷ୍ଣବୀ ଶକ୍ତିରନନ୍ତବୀର୍ଯ୍ୟା
ବିଶ୍ୱସ୍ୟ ବୀଜଂ ପରମାଽସି ମାୟା ।
ସମ୍ମୋହିତଂ ଦେବି ସମସ୍ତ ମେତତ୍
ତ୍ୱଂ ବୈ ପ୍ରସନ୍ନା ଭୁବି ମୁକ୍ତି ହେତୁଃ ।

ତୁମ୍ଭେ ହେଉଛ ବୈଷ୍ଣବୀ ଶକ୍ତି, ତୁମ୍ଭର ସାମର୍ଥ୍ୟ ଅନନ୍ତ । ତୁମ୍ଭେ ଜଗତର ମୂଳକାରଣ, ତୁମ୍ଭେ ହେଉଛ ମାୟା । ତୁମ୍ଭେ ଅବିଦ୍ୟା ରୂପରେ ସମସ୍ତଙ୍କୁ ମୋହିତ କରି ରଖିଛ । ତୁମ୍ଭେ ପ୍ରସନ୍ନ ହେଲେ ବିଦ୍ୟାରୂପରେ ମୁକ୍ତିର କାରଣ ହୋଇଥାଅ ।

"ବିଦ୍ୟାଃ ସମସ୍ତାସ୍ତବ ଦେବି ଭେଦାଃ
ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍ସୁ
ତ୍ୱୟୈକୟା ପୂରିତମମ୍ବୟୈତତ୍
କାତେ ସ୍ତୁତିସ୍ତବ୍ୟପରା ପରୋକ୍ତିଃ"

ହେ ଦେବି ଏହି ସମସ୍ତ ବିଦ୍ୟା ହେଉଛନ୍ତି ଭେଦମାନ, ଜଗତର ସମସ୍ତ ସ୍ତ୍ରୀଜାତି ମଧ୍ୟ ହେଉଛନ୍ତି ତୁମ୍ଭର ଭେଦ ବା ପ୍ରକାଶ । ମାତା ତୁମ୍ଭେ ଜଗତରେ ପୂରି ରହିଛ—ତୁମ୍ଭର କି ସ୍ତୁତି କରି ପାରିବି ।

ଏହି ଶକ୍ତି ବିଶ୍ୱକୁ ବ୍ୟାପି ରହିଅଛି ବ୍ରହ୍ମ ହେଉଛନ୍ତି ଏହି ଶକ୍ତିର ଆଧାର । ଶକ୍ତି ଶକ୍ତିମାନ୍ ବ୍ରହ୍ମଙ୍କୁ ତ୍ୟାଗକରି ରହିପାରେ ନାହିଁ ।

କିନ୍ତୁ ପରଂବ୍ରହ୍ମ ଅନନ୍ତ ବ୍ରହ୍ମାଣ୍ଡ ବ୍ୟାପି ରହିଅଛନ୍ତି । ବ୍ରହ୍ମାଣ୍ଡର ଧୂଳିକଣାଟିଏ ମଧ୍ୟ ବ୍ରହ୍ମଙ୍କ ବ୍ୟାପ୍ତିର ବହିର୍ଭୂତ ନୁହେ ପରଂବ୍ରହ୍ମଙ୍କର ବ୍ୟାପ୍ତିସ୍ଥାନ ମଧ୍ୟରେ ଶକ୍ତି ମଧ୍ୟ ସେହିପରି ପ୍ରବେଶ କରି ରହିଅଛି । ଯେଉଁଠାରେ ଶିବ ବା ବ୍ରହ୍ମ ସେଠାରେ ମଧ୍ୟ ଶକ୍ତି । ଶିବ ଶକ୍ତିଙ୍କର ସମ୍ପର୍କ ଅବିଚ୍ଛେଦ୍ୟ । ଗୋଟିକର ଅଭାବରେ ଅନ୍ୟଟିର ଅବସ୍ଥିତି ଅସମ୍ଭବ । କାଳିଦାସ ମଧ୍ୟ ରଘୁ ବଂଶରେ କହିଛନ୍ତିଃ—

"ବାଗର୍ଥମିବ ସମ୍ପୃକ୍ତୌ ବାଗାର୍ଥ ପ୍ରତି ପତ୍ତୟେ
ଜଗତଃ ପିତରୌ ବନ୍ଦେ ପାର୍ବ୍ବତୀପରମେଶ୍ୱରୌ ।".

ଶବ୍ଦ ଓ ଅର୍ଥ ପରି ନିତ୍ୟ ସମ୍ପୃକ୍ତ ଜଗତର ମାତାପିତା ପାର୍ବତୀ ପରମେଶ୍ୱରଙ୍କୁ ବଚନ ଓ ଅର୍ଥର ସ୍ଫୁରଣ ସକାଶେ ନମସ୍କାର କରୁଅଛି ।

କିନ୍ତୁ ଶକ୍ତିହୀନ ବ୍ରହ୍ମ ନିଷ୍କ୍ରିୟ ଶୂନ୍ୟାକାର ଅର୍ଥାତ୍ ତାଙ୍କର ଥିବା ନଥିବା ମଧ୍ୟ ସମାନ । ଶକ୍ତି ମଧ୍ୟ ଏହିପରି ଶୂନ୍ୟାକାର ବ୍ରହ୍ମଙ୍କ ମଧ୍ୟରେ ପ୍ରବେଶ କରି ଅବସ୍ଥାନ କରେ । ଏହି ସମୟରେ ଶକ୍ତି ସୂକ୍ଷ୍ମ ଅବସ୍ଥାରେ ରହିଥାଏ । ଏହି ଅବସ୍ଥାରେ ଶକ୍ତିକୁ ନିର୍ଗୁଣା କହିଥାନ୍ତି ଅର୍ଥାତ୍—

ପ୍ରଳୟ କାଳରେ ସ୍ଥୁଳ ଜଗତ ସୂକ୍ଷ୍ମ ଜଗତରେ ଏବଂ ସୂକ୍ଷ୍ମଜଗତ୍ ଶକ୍ତିରେ ଲୀନ ହୁଏ । ଶକ୍ତି ଏହିପରି ସୂକ୍ଷ୍ମାକାରର ଜଗତକୁ କବଳୀକୃତ କରି ପରବ୍ରହ୍ମରେ ଲୀନ ହୁଅନ୍ତି ।

"ଯଥାଣ୍ଡାନ୍ତର୍ଜଲେ ମହୀ ସର୍ବାସ୍ତୀଦଂ ତଥାତ୍ମନି
ଫଳ ପତ୍ର ଲତା ପୁଷ୍ପ ଶାଖା ବିଟପ ମୂଳବାସ
ବୃକ୍ଷବୀଜେ ଯଥା ବୃକ୍ଷ ସ୍ତଥେଦଂ ବ୍ରହ୍ମଣିସ୍ଥିତଂ"

(ଯୋଗବାଶିଷ୍ଠ ରାମାୟଣ)

ଏହି ପୃଥିବୀ ବ୍ରହ୍ମାଣ୍ଡର ଅନ୍ତର୍ଗତ ଜଳରେ ଯେପରି ଅବସ୍ଥିତ କରେ ସେହିପରି ଏହି ବିଶ୍ୱ ପରମାତ୍ମାରେ ଅବସ୍ଥିତ କରେ । ଫଳପୁଷ୍ପ ପତ୍ର ଲତା ଶାଖା ମୂଳ ସହିତ ବୃକ୍ଷ ଯେପରି ସୂକ୍ଷ୍ମ ଭାବରେ ବୃକ୍ଷ ବୀଜରେ ନିହିତ ଥାଏ ସେହିପରି ପ୍ରଳୟ କାଳରେ ଏହି ଜଗତ୍ ସୂକ୍ଷ୍ମ ଭାବରେ (ଶକ୍ତିରେ ଏବଂ ଶକ୍ତି ମଧ୍ୟ ସୂକ୍ଷ୍ମ ଭାବରେ) ବ୍ରହ୍ମରେ ଅବସ୍ଥିତ କରେ । ଏହି ନିର୍ଗୁଣ ଅବସ୍ଥାରେ ଶକ୍ତିର ଆକାର ଓ ସ୍ୱରୂପ ସୂକ୍ଷ୍ମ ଅବସ୍ଥାରେ ରହିଥାଏ । କାର୍ଯ୍ୟର ପୂର୍ବରୁ ଶକ୍ତି ଅନୁଭୂତ ହୁଏନାହିଁ । ଏହି ପ୍ରଳୟ କାଳରେ କୌଣସି କାର୍ଯ୍ୟ ଥାଏନାହିଁ ବୋଲି ଶକ୍ତି ମଧ୍ୟ ଅନୁଭୂତ ହୁଏନାହିଁ । ସୃଷ୍ଟିର ଆରମ୍ଭ କାଳରେ ଶକ୍ତିର ସ୍ଫୁରଣ ହୁଏ ଏବଂ ସେହି ସ୍ଫୁରିତ ଶକ୍ତିରୁ ଜଗତର ବିକାଶ ହୁଏ । ଶକ୍ତି ଜଗତ

ରୂପରେ ପରିଣତ ହୁଅନ୍ତି । ସ୍ଥୂଳ ଜଗତ ରୂପରେ ପରିଣତ ଶକ୍ତିକୁ ସଗୁଣା କହନ୍ତି । ତେଣୁ ଶକ୍ତି କେବଳ ଜଗତକୁ ନିୟନ୍ତ୍ରଣ କରନ୍ତି ଏବଂ ଉପାସନା ପ୍ରଭୃତି କର୍ମର ଫଳ ପ୍ରଦାନ କରନ୍ତି । ସେଥିପାଇଁ ଶକ୍ତି ହେଉଛନ୍ତି ଉପାସନାର ଯୋଗ୍ୟା ।

ଶାକ୍ତମାନେ ଜଗନ୍ନାଥପୀଠକୁ ଶାକ୍ତପୀଠ ବୋଲି ପ୍ରମାଣିତ କରିବାକୁ ଯାଇ କହିଥାନ୍ତି—

"ବିମଳା ଭୈରବୀଯତ୍ର ଜଗନ୍ନାଥସ୍ତୁ ଭୈରବଃ"

ଜଗନ୍ନାଥ ମନ୍ଦିରରେ ବିମଳା ହେଉଛନ୍ତି ଭୈରବୀ ଅର୍ଥାତ୍ ଶକ୍ତି ଏବଂ ଜଗନ୍ନାଥ ହେଉଛନ୍ତି ଭୈରବ ଅର୍ଥାତ୍ ଶିବ । ବିମଳାଙ୍କ ନିକଟରେ ସମର୍ପଣ ନ ହେଲା ପର୍ଯ୍ୟନ୍ତ ମହାପ୍ରସାଦକୁ ମହାପ୍ରସାଦ ରୂପରେ ଗ୍ରହଣ କରାଯାଏ ନାହିଁ । ସେଥିପାଇଁ ମହାପ୍ରସାଦକୁ କେହି କେହି ମାପ୍ରସାଦ ବୋଲି କହନ୍ତି । ଜଗନ୍ନାଥ ମନ୍ଦିରରେ ଶକ୍ତିଙ୍କର କର୍ତ୍ତୃତ୍ୱ, ଓ ଈଶ୍ୱରତ୍ୱ ଏବଂ ଜଗନ୍ନାଥଙ୍କର ନିର୍ଗୁଣତ୍ୱ ସର୍ବସାଧାରଣରେ ପ୍ରଚଳିତ ଲକ୍ଷ୍ମୀ-ପୁରାଣରେ ସୁନ୍ଦର ଆଖ୍ୟାୟିକା ଛଳରେ ପ୍ରତିପାଦିତ ହୋଇଛି । ସେହି ଆଖ୍ୟାୟିକାର ସାରାଂଶ ତଳେ ଉଦ୍ଧୃତ ହେଲା—

ଦିନେ ମାର୍ଗଶିର ମାସ ଗୁରୁବାର ଦିନ ପ୍ରାତଃକାଳରେ ଲକ୍ଷ୍ମୀ ନଗରର ପରିଚ୍ଛନ୍ନତା ଓ ପରିଷ୍କୃତତା ଦର୍ଶନ କରିବା ପାଇଁ ବହିର୍ଗତ ହେଲେ । ସେ ଜଣେ ଚଣ୍ଡାଳର ଗୃହ ଓ ଗୃହ-ଦ୍ୱାରକୁ ପରିଷ୍କୃତ ପରିଚ୍ଛନ୍ନ ଗୋମୟଲିପ୍ତ ଏବଂ ଚିତ୍ରାଙ୍କିତ ଦେଖି ସେହିଠାରେ କିଛି କାଳ ବାସ କଲେ । ବଳଭଦ୍ର ମଧ୍ୟ ସେହି ସମୟରେ ନଗର ପରିକ୍ରମାରେ ବହିର୍ଗତ ହୋଇଥିଲେ । ସେ ଲକ୍ଷ୍ମୀଙ୍କୁ ଚଣ୍ଡାଳ ଗୃହରେ ଦର୍ଶନ କରି ଲଜ୍ଜିତ ହୋଇ ମନ୍ଦିରକୁ

ଆସି ଜଗନ୍ନାଥଙ୍କୁ ତିରସ୍କାର କରୁଥିଲେ ଏବଂ ଗୃଣ୍ଡାଳୁଣୀ ଲକ୍ଷ୍ମୀଙ୍କୁ ମନ୍ଦିରରେ ସ୍ଥାନ ନ ଦେଇ ନିର୍ବାସନ କରିବା ସକାଶେ ଜଗନ୍ନାଥଙ୍କୁ ପ୍ରବର୍ତ୍ତାଇଥିଲେ । ଜଗନ୍ନାଥ ଆପତ୍ତି କଲେ ମଧ୍ୟ ବଳଭଦ୍ର ତାଙ୍କ କଥାରେ କର୍ଣ୍ଣପାତ ନ କରି ସବିଶେଷ ନିର୍ବନ୍ଧ କରିଥିଲେ । ଜ୍ୟେଷ୍ଠ ଭ୍ରାତାଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରି ଜଗନ୍ନାଥ ବଳରାମଙ୍କ ପ୍ରସ୍ତାବରେ ସମ୍ମତ ହୋଇ ଗୃଣ୍ଡାଳୁଣୀ ବୋଲି ଲକ୍ଷ୍ମୀଙ୍କୁ ମନ୍ଦିର ବାସନ୍ଦ କରିଥିଲେ । ଲକ୍ଷ୍ମୀ ଗୃଣ୍ଡାଳଘରୁ ଫେରି ଆସି ଜଗନ୍ନାଥଙ୍କ ଆଦେଶ ଶୁଣି ମନ୍ଦିର ପ୍ରବେଶରୁ ବଞ୍ଚିତ ହୋଇ ନଗରକୁ ଫେରି ଯାଇଥିଲେ ଏବଂ ଗୃଣ୍ଡାଳ ଘରେ ଯାଇ ବାସ କରିଥିଲେ । ଲକ୍ଷ୍ମୀଙ୍କ ବାସ ଯୋଗୁଁ ଗୃଣ୍ଡାଳଗୃହ ପ୍ରାସାଦରେ ପରିଣତ ହୋଇଥିଲା ଏବଂ ଧନ ରତ୍ନରେ ପରିପୂର୍ଣ୍ଣ ହୋଇଥିଲା । ଲକ୍ଷ୍ମୀ ତ୍ୟାଗ କରିଯିବାରୁ ମନ୍ଦିର ଲକ୍ଷ୍ମୀଛଡ଼ା ହେଲା ଏବଂ ଧନଶୂନ୍ୟ ହେଲା । ଧନ ଅଭାବରୁ କ୍ରମେ କ୍ରମେ ମନ୍ଦିରର ଗୀତ ନାଟ ମଧ୍ୟ ବନ୍ଦହେଲା । ଜଗନ୍ନାଥଙ୍କର ୬୪ପୌଠି ଭୋଗ ଆଉ ଅଦୌ ହୋଇ ପାରିଲା ନାହିଁ । ଖାଦ୍ୟ ଅଭାବରୁ ଜଗନ୍ନାଥ ଓ ବଳଭଦ୍ର କ୍ରମେ କ୍ରମେ କ୍ଷୀଣ ଦୁର୍ବଳ ଅସୁନ୍ଦର ଓ ଲକ୍ଷ୍ମୀଛଡ଼ା ହୋଇଗଲେ । ଅନେକ ଦିନ ଧରି ଖାଦ୍ୟ ନ ପାଇ ଦୁଇଭାଇ ଦୁର୍ବଳ ଦେହରେ ଭିକ୍ଷା କରିବାକୁ ନଗରକୁ ଗଲେ । କିନ୍ତୁ କୌଣସିଠାରେ ଲକ୍ଷ୍ମୀଛଡ଼ାଙ୍କୁ ଭିକ୍ଷା ମଧ୍ୟ ମିଳିଲା ନାହିଁ । ଶେଷରେ କ୍ଷୁଧାରେ ଅଥୟ ହୋଇ ଜଗନ୍ନାଥ ବଳଭଦ୍ର ଲକ୍ଷ୍ମୀ ରହୁଥିବା ଗୃଣ୍ଡାଳ ଗୃହରେ ପ୍ରବେଶ କଲେ । ଗୃଣ୍ଡାଳର ଗୃହ ବୋଲି ଜାଣିଲେ ମଧ୍ୟ ଦୁହେଁ ଭୋଜନ ସକାଶେ ଗୃଣ୍ଡାଳ ଗୃହରେ ପ୍ରାର୍ଥନା କରିଥିଲେ । ଗୃଣ୍ଡାଳର ପାକ ତାଙ୍କର ଖାଦ୍ୟ ହେବ ନାହିଁ ବୋଲି ଖାଦ୍ୟର ଉପକରଣମାନ ଦାସୀହସ୍ତରେ ସେ ଦୁହିଁଙ୍କ ନିକଟକୁ ପ୍ରେରଣ

କରୁଥିଲେ । ବଳଭଦ୍ର ଚେଷ୍ଟା କରି କରି ଚୁଲୀ ଲଗାଇ ପାରିଲେ ନାହିଁ । ତନ୍ଥୁଁ ଜଗନ୍ନାଥ ଚୁଲୀ ଲଗାଇବା ଲାଗି ଚୁଲୀ ଫୁଙ୍କି ଫୁଙ୍କି ତାଙ୍କର ମୁହଁ କଳାକାଠ କରିଥିଲେ । ସ୍ୱାମୀଙ୍କର ଏ ଦୁର୍ଦ୍ଦଶା ସହି ନ ପାରି ଲକ୍ଷ୍ମୀ ନିଜେ ଆସି ସେମାନଙ୍କ ସହାଣେ ଖାଦ୍ୟପାକ କରିଥିଲେ । ବଳଭଦ୍ର ଜଗନ୍ନାଥ ଲକ୍ଷ୍ମୀଙ୍କ ଶକ୍ତି ପାଇ ଏବଂ ଲକ୍ଷ୍ମୀଙ୍କ ଅଭାବରେ ନିଜର ଦୁର୍ଦ୍ଦଶା ଅନୁଭବ କରି ଲକ୍ଷ୍ମୀଙ୍କୁ ଅନୁନୟ ବିନୟ କରି ମହାସମାରୋହରେ ମନ୍ଦିରକୁ ନେଇଥିଲେ । ଏହି ଉପାଖ୍ୟାନରେ ଦାରୁବ୍ରହ୍ମ ଜଗନ୍ନାଥଙ୍କର କର୍ତ୍ତୃତ୍ୱର ଅଭାବ ଏବଂ ନିସ୍ପୃହତା ପ୍ରତିପାଦିତ ହୋଇଅଛି ଏବଂ ଶକ୍ତିରୂପା ଲକ୍ଷ୍ମୀଙ୍କର କର୍ତ୍ତ୍ରୀତ୍ୱ ମଧ୍ୟ ବିଶେଷଭାବରେ ପ୍ରମାଣିତ ହୋଇଅଛି । ବିଲଙ୍କା ରାମାୟଣରେ ସାରଳା ଦାସ ଶକ୍ତିଙ୍କର କର୍ତ୍ତ୍ରୀତ୍ୱ ଓ ଇଶ୍ୱରତ୍ୱ ଉପରି ପ୍ରତିପାଦିତ କରିଛନ୍ତି ତାହା ପୂର୍ବରେ କଥିତ ହୋଇଅଛି ।

ଯେଉଁମାନେ ଗାୟତ୍ରୀ ଜପ କରନ୍ତି ସେମାନେ ପୂର୍ଣ୍ଣ ଶାକ୍ତ । ଗାୟତ୍ରୀରେ ପ୍ରଧାନ ଭାବରେ ଆମ୍ଭମାନଙ୍କର ବୁଦ୍ଧିକୁ ପ୍ରେରିତ କର ବୋଲି ପ୍ରାର୍ଥନା କରାଯାଇଅଛି । ଗାୟତ୍ରୀଙ୍କର ଆବାହନ ମନ୍ତ୍ର ହେଉଛି—

"ଆୟାହି ବରଦେ ଦେବି ତ୍ର୍ୟକ୍ଷରେ ବ୍ରହ୍ମରୂପିଣି
ଗାୟତ୍ରି ଛନ୍ଦସାଂମାତା ବ୍ରହ୍ମଯୋନି ନମୋଽସ୍ତୁତେ"

"ହେ ବରଦାୟିନି ତ୍ର୍ୟକ୍ଷର ବିଶିଷ୍ଟେ ବ୍ରହ୍ମସ୍ୱରୂପିଣି, ଛନ୍ଦର ମାତା ବ୍ରହ୍ମଯୋନି ରୂପା ଗାୟତ୍ରି ଦେବି ଆସ, ତୁମ୍ଭଙ୍କୁ ମୋର ନମସ୍କାର । ତେଣୁ ଗାୟତ୍ରୀ ହେଉଛି ଶକ୍ତିର ଉପାସନା । ଦ୍ୱିଜର ପ୍ରାତଃକାଳରେ ଏବଂ ସାୟଂକାଳରେ ଗାୟତ୍ରୀର ଜପ

ନିତ୍ୟକୃତ୍ୟ ରୂପରେ ବିହିତ ଅଛି । ଏହା ହେଉଛି ସନ୍ଧ୍ୟାର ପ୍ରଧାନ ଅଙ୍ଗ । ଗାୟତ୍ରୀର ଜପ ଏହିକାଳରେ ନ କଲେ ଦ୍ୱିଜତ୍ୱରୁ ବଞ୍ଚିତ ହେବାକୁ ହୁଏ ।

"ନୋପତିଷ୍ଠତି ଯଃ ପୂର୍ବାଂ ନୋପାସ୍ତେଯସ୍ତୁ ପଶ୍ଚିମାଂ
ସ ଶୂଦ୍ରବଦ୍ ବହିଷ୍କାର୍ଯ୍ୟଃ ସର୍ବସ୍ମାଦ୍ ଦ୍ୱିଜକର୍ମଣଃ"

"ଯେଉଁ ଦ୍ୱିଜ ପ୍ରାତଃକାଳରେ ସନ୍ଧ୍ୟା ନ କରେ ଏବଂ ସାୟଂକାଳରେ ସନ୍ଧ୍ୟା ନ କରେ, ସେ ସମସ୍ତ ଦ୍ୱିଜ କାର୍ଯ୍ୟରୁ ଶୂଦ୍ର ପରି ବହିଷ୍କୃତ ହେବ ।" ତେଣୁ ଗାୟତ୍ରୀର ଉପାସକ ଦ୍ୱିଜମାନେ ହେଉଛନ୍ତି ପରମଶାକ୍ତ । ପ୍ରତି ଗ୍ରାମରେ ଗ୍ରାମଦେବତା ରୂପରେ ଶକ୍ତିଦେବୀଙ୍କର ଉପାସନା ହୋଇଥାଏ ।

ଶକ୍ତିର ପ୍ରକାଶରେ କିପରି ସୃଷ୍ଟି ପ୍ରକ୍ରିୟାର ଆରମ୍ଭ ହୁଏ— ତାହା ଶାକ୍ତ ତାନ୍ତ୍ରିକମାନେ ଏହିପରି ଭାବରେ ବର୍ଣ୍ଣନା କରିଛନ୍ତି—

"ସଚ୍ଚିଦାନନ୍ଦ ବିଭବାତ୍ ସକଳାତ୍ ପରମେଶ୍ୱରାତ୍
ଆସୀଚ୍ଛକ୍ତି ସ୍ତତୋନାଦଃ ନାଦାତ୍ ବିନ୍ଦୁ ସମୁଦ୍ଭବଃ
ଶିବଶକ୍ତିମୟଂ ସାକ୍ଷାତ୍ ତ୍ରିଧାଃସୌଭିଦ୍ୟତେପୁନଃ
ବିନ୍ଦୁର୍ନାଦୋ ବୀଜମିତି ତସ୍ୟ ଭେଦାଃ ସମୀରିତାଃ
ବିନ୍ଦୁଃ ଶିବାତ୍ମକୋ ବୀଜଂ ଶକ୍ତିର୍ନାଦସ୍ତୟୋର୍ମିଥଃ
+ + +
ଭିଦ୍ୟମାନାତ୍ ପରାଦ୍ବିନ୍ଦୋରବ୍ୟକ୍ତାତ୍ମାରବୋ'ଭବତ୍
ଶବ୍ଦ ବ୍ରହ୍ମେତି ତଂ ପ୍ରାହୁଃ ସର୍ବାଗମ ବିଶାରଦାଃ ।
( ସାରଦାତିଳକ )

ସଚ୍ଚିଦାନନ୍ଦ ସ୍ୱରୂପ ସଗୁଣ ବ୍ରହ୍ମରୁ ଶକ୍ତି, ଶକ୍ତିରୁ ନାଦ ଏବଂ ନାଦରୁ ବିନ୍ଦୁ ଅଭିଭୂତ ହୁଏ । ଏହି ପର ଶକ୍ତିମୟ ବିନ୍ଦୁ ତିନି ଭାଗରେ ବିଭକ୍ତ ହୋଇ ଯଥାକ୍ରମରେ ବିନ୍ଦୁ ନାଦ ଏବଂ ବୀଜ ଏହି ତିନିନାମରେ ପରିଚିତ । ବିନ୍ଦୁ ଶିବ ସ୍ୱରୂପ, ବୀଜ ଶକ୍ତି ସ୍ୱରୂପ ଏବଂ ନାଦ ହେଉଛି ଶିବଶକ୍ତି ଉଭୟାତ୍ମକ । ଏହିମାନେ ହେଉଛନ୍ତି କ୍ରମରେ ଜ୍ଞାନ, ଇଚ୍ଛା, କ୍ରିୟା ନାମରେ ପରିଚିତ ତିନି ଶକ୍ତି । ପ୍ରଥମ ବିନ୍ଦୁ ବିଦୀର୍ଣ୍ଣ ହୋଇ ତାହାଁରୁ ଅବ୍ୟକ୍ତ ଶବ୍ଦ ଜାତ ହେଲା । ଏହି ଅବ୍ୟକ୍ତ ଶବ୍ଦକୁ ସମସ୍ତ ତାନ୍ତ୍ରିକମାନେ ଶବ୍ଦବ୍ରହ୍ମ ବୋଲି କହିଥାନ୍ତି । ଏହି ସମସ୍ତ ତାନ୍ତ୍ରିକ ପାରିଭାଷିକ ଶବ୍ଦ ଓଡ଼ିଆ ଗ୍ରନ୍ଥ ମାନଙ୍କରେ ବିଶେଷ ଭାବରେ ସାରଳା ମହାଭାରତରେ ଏବଂ ପଞ୍ଚସଖାଙ୍କ ଗ୍ରନ୍ଥ ମାନଙ୍କରେ ପ୍ରଯୁକ୍ତ ହୋଇଛି । ତାହାଁର ଆଲୋଚନା ଏଠାରେ ପ୍ରବନ୍ଧର କଲେବର ଦୃଷ୍ଟିରୁ କରି ହେଉନାହିଁ ।

ପ୍ରକୃତରେ ସାଧନା ମାର୍ଗରେ ସହଜରେ ସଂକ୍ଷେପରେ କହିବାକୁ ଗଲେ—ଏହି ଶକ୍ତି ଦେବୀ ହେଉଛନ୍ତି କୁଣ୍ଡଳିନୀ । ମସ୍ତକରେ ସହସ୍ରାର କମଳରେ ପରବ୍ରହ୍ମ ଅବସ୍ଥାନ କରନ୍ତି । ପରବ୍ରହ୍ମଙ୍କର ଅଂଶ ସ୍ୱରୂପ ଜୀବାତ୍ମା ହୃତ୍‌ପଦ୍ମରେ ଅବସ୍ଥାନ କରନ୍ତି ଏବଂ କୁଣ୍ଡଳିନୀ ଶକ୍ତି ଲିଙ୍ଗଗୁହ୍ୟର ମଧ୍ୟବର୍ତ୍ତୀ ମୂଳାଧାରରେ ଅବସ୍ଥାନ କରନ୍ତି । ଏହି ଜୀବାତ୍ମା ପରବ୍ରହ୍ମଙ୍କଠାରୁ ଚୈତନ୍ୟ ଲାଭ କରୁଛି ଏବଂ କୁଣ୍ଡଳିନୀ ଶକ୍ତିଙ୍କଠାରୁ ଶକ୍ତିଲାଭ କରୁଛି । ତେଣୁ କୁଣ୍ଡଳିନୀ ହେଉଛନ୍ତି ଜୀବଶକ୍ତି । କୁଣ୍ଡଳିନୀ ଶକ୍ତିସାଧାରଣ ନିବଲପ୍ରା-କାରରେ ନିଦ୍ରିତ ରହିଥାଏ । ସାଧାନାବଳରେ କୁଣ୍ଡଳିନୀକୁ ଜାଗ୍ରତ କରି ମୂଳାଧାରରୁ ସୁଷୁମ୍ନାମାର୍ଗରେ ଉତ୍ତୋଳିତ କରି ସହସ୍ରଦଳ କମଳରେ ପରବ୍ରହ୍ମଙ୍କ ସହିତ ସାମରସ୍ୟ ଅର୍ଥାତ୍

ସମ୍ପୂର୍ଣ୍ଣଭାବରେ ଏକାଭାବ ସମ୍ପାଦନ କରିବାକୁ ହୁଏ । ୧ମରେ ଏହି ଏକ୍ୟ ଭାବ ସ୍ଥାୟୀ ହୁଏନାହିଁ କିନ୍ତୁ ଦୀର୍ଘକାଳ ସାଧନାବଳରେ ତାହା ସ୍ଥାୟୀ ହୁଏ ଏବଂ ସେହି ସମୟରେ ଜଗତ୍ ଓ ଜୀବାତ୍ମାର ପୃଥକ୍ ପୃଥକ୍ ଅସ୍ତିତ୍ୱ ରହେନାହିଁ । "ସର୍ବଂ ବ୍ରହ୍ମମୟଂ ଜଗତ୍"ର ଅନୁଭବ ହେଲାକ୍ଷଣି ପରମାନନ୍ଦରେ ଲୀନ ହେବାକୁ ହୁଏ । ଜ୍ଞାତା ଜ୍ଞାନ ଏବଂ ଜ୍ଞେୟର ସତ୍ତା ରହେନାହିଁ । କେବଳ ପରମାନନ୍ଦ ଅନୁଭୂତ ହୁଏ ।

"ଅମୂଳାଧାର ମାବ୍ରହ୍ମରନ୍ଧ୍ରଂ ଗତ୍ୱା ପୁନଃ ପୁନଃ
ଚିଚ୍ଚନ୍ଦ୍ର କୁଣ୍ଡଳୀଶକ୍ତି—ସାମରସ୍ୟ ସୁଖୋଦୟଃ ।
× × ×
ପରଶକ୍ତ୍ୟାତ୍ମ ମିଥୁନ ସଂଯୋଗାନନ୍ଦ ନିର୍ଭରଃ
ଯଆସ୍ତେ ମୈଥୁନଂ ତତ୍ସ୍ୟାଦପରେ ସ୍ତ୍ରୀ ନିଷେବକାଃ
(କୁଳାର୍ଣ୍ଣବତନ୍ତ୍ର)

ମୂଳାଧାରସ୍ଥ କୁଣ୍ଡଳିନୀ ଶକ୍ତି ବାରମ୍ବାର ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ଯାଇ ପରବ୍ରହ୍ମରୂପକ ଚନ୍ଦ୍ର ସହିତ ମିଳିତହେଲେ ସାମରସ୍ୟ ସୁଖ ଜାତହୁଏ । ଏହି ପରମଶକ୍ତି ସହିତ ବ୍ରହ୍ମଙ୍କ ମିଳନରୁ ପରମାନନ୍ଦ ଜାତହୁଏ । ଏହି ପରମାନନ୍ଦରୁ ନିଃସୃତ ସୁଧାକୁ ମୈଥୁନ କହନ୍ତି । ମିଥୁନ ଅର୍ଥ ଶିବଶକ୍ତିଙ୍କର ମିଳନ । ଯେଉଁମାନେ ଏହି ଭାବରେ ମୈଥୁନ ନ କରନ୍ତି ସେମାନେ ସ୍ତ୍ରୀ ସେବକ ।

ମହୀଂ ମୂଳାଧାରେ କମପି ମଣିପୂରେ ହୁତବହଂ
ସ୍ଥିତଂ ସ୍ୱାଧିଷ୍ଠାନେ ହୃଦି ମରୁତମାକାଶମୁପରି ।

ମନୋଽପି ଭ୍ରୂମଧ୍ୟେ ସକଳ ମପିଭିତ୍ୱା କୁଳପଥଂ
ସହସ୍ରାରେ ପଦ୍ମେ ସହ ରହସି ପତ୍ୟା ବିହରସି
(ଆନନ୍ଦ ଲହରୀ)

"ତୁମ୍ଭେ କୁଣ୍ଡଳୀନୀରୂପରେ ମୂଳାଧାରସ୍ଥିତ ମହୀମଣ୍ଡଳ, ସ୍ୱାଧିଷ୍ଠାନସ୍ଥିତ ଜଳମଣ୍ଡଳ, ମଣିପୁରସ୍ଥିତ ଅଗ୍ନିମଣ୍ଡଳ, ଅନାହତସ୍ଥିତ ବାୟୁମଣ୍ଡଳ, ବିଶୁଦ୍ଧ ମଣ୍ଡଳ (ଭ୍ରୂମଧ୍ୟ)ସ୍ଥିତ ମନଶ୍ଚକ୍ର, ଏହି ସମସ୍ତ କୁଳପଥ (ଷଟ୍‌ଚକ୍ର) ଭେଦକରି ସହସ୍ରାର ପଦ୍ମକୁ ଗମନ କରି ପତିଙ୍କ ସହିତ ଏକାନ୍ତରେ ବିହାର କର ।"

ସୁଧାଧାରାସାରୈଶ୍ଚରଣଯୁଗଳାନ୍ତ ର୍ବିଗଳିତୈଃ
ପ୍ରପଞ୍ଚଂ ସିଞ୍ଚନ୍ତୀ ପୁନରପି ରସାମ୍ନାୟମହସା ।
ଅବାପ୍ୟ ସ୍ୱାଂ ଭୂମିଂ ଭୁଜଗନିଭମଧ୍ୟୁଷ୍ଟବଳୟଂ
ସ୍ୱମାତ୍ମାନଂ କୃତ୍ୱା ସ୍ୱପିଷି କୁଳକୁଣ୍ଡେ କୁହରିଣି"
(ଆନନ୍ଦଲହରୀ)

ତୁମ୍ଭେ ଷଟ୍‌ଚକ୍ର ଭେଦକରି ସହସ୍ରାର ପଦ୍ମକୁ ଯାଇ ପରମ ଶିବ ସହିତ ମିଳିତ ହୋଇ ଚରଣଯୁଗଳରୁ ସୁଧାଧାରା ବର୍ଷଣ କରି ଷଟ୍‌ଚକ୍ର ଏବଂ ତଦାତ୍ମକ ଦେହକୁ ତର୍ପଣ କର । ତହିଁପରେ ସେହି ଷଟ୍‌ଚକ୍ର (କୁଳପଥ) ମାର୍ଗରେ ନିଜ ବସତି ସ୍ଥଳୀ ମୂଳଧାରକୁ ପ୍ରତ୍ୟାଗମନ, କରି ନିଜ ଶରୀରକୁ ସାର୍ଦ୍ଧ ତ୍ରିବଳୟାକାରରେ ସର୍ପରୂପରେ ସଚ୍ଛିଦ୍ର କୁଳକୁଣ୍ଡରେ (ମୂଳାଧାରରେ) ସୁଖରେ ନିଦ ଯାଅ । ଏହି କୁଣ୍ଡଳୀନୀ ଶକ୍ତି ହେଉଛି ମନୁଷ୍ୟ ଦେହରେ ଆଦ୍ୟା ଶକ୍ତି । ସେହି କୁଣ୍ଡଳୀନୀର ଚାଳନା ଦ୍ୱାରା ମନ ପବନର ନିରୋଧ ହୋଇଥାଏ ।


Digitized by srujan ka@gmail.com

ନଚଶ୍ଚାନ୍ ମନସୋ ନାଡ ଭନ୍ନୋଽତ
ତ୍ରିକିରୋଧନାତ୍ ମନୋ ନିଶ୍ଚଳାମେତ । (ବିଷ୍ଣୁ ପୁରାଣ)

ପ୍ରାଣ ବାୟୁ ସହିତ ମନର ବିଶେଷ ଭେଦ ନାହିଁ । କୁଣ୍ଡଳିନୀ ଗ୍ରନ୍ଥନାଦ୍ୱାରା ବାୟୁର ନିରୋଧ ହେଲେ ମନ ମଧ୍ୟ ସ୍ଥିର ଓ ନିଶ୍ଚଳ ହୋଇଥାଏ । ସାରଳାଦାସ ମହାଭାରତରେ ବିଭିନ୍ନ ସ୍ଥାନରେ ଏହି ସାଧନାର ସୂଚନା ପ୍ରଦାନ କରିଛନ୍ତି । ସେ ଅଶ୍ୱତ୍ଥାମାଙ୍କ ତପସ୍ୟା ବର୍ଣ୍ଣନା କରି କହିଛନ୍ତି:—

"ପବନକୁ ମୂଳାଧାରୁ ଟେକଇ ଉଜାଣି
କୁଣ୍ଡଳିନୀ ଶକ୍ତିକୁ ଗ୍ରନ୍ଥିତ କରି ଅଣି ।
ବ୍ୟାସାଙ୍ଗୁଳ ଗଙ୍ଗା ବୋଲି ଅଛି ଏକ ଶୋଷା
ନିଦ୍ରା ଆଳସ୍ୟଅବିର ନାହିଁ କ୍ଷୁଧା ତୃଷା,
ପଞ୍ଚମୁନା ନାଳଦ୍ୱାର ତଦୁର୍ଦ୍ଧରେ ବାଟ ।
ନାଳ ଅନଳ ଭେଟିଲେ ପାଟଣାଶ୍ରୀହାଟ ।
ଛନ୍ଦଣ ପକାଇଲ୍ଲ ସେ ବାଆସ୍ତ୍ରରୀ ମୁଦ୍ରା
ଅପାଦ ଦହନ କଲ୍ଲ ଭାଙ୍ଗି ମହାନିଦ୍ରା ।
ନିଦ୍ରା ପୁରୁଷ ଅଟଇ ତହିଁକି ଯେ କାଳ
ବିନାଶ କରଇ ଏହି ସିନା ଏ ସକଳ ।
ପବନକୁ ଉଠାଇଣ ନବଦ୍ୱାର ବାଟେ
ତାହାକୁ ବନ୍ଧନ କରି ଶୋଷିବ ଏ ଘଟେ ।
ନବଦ୍ୱାର ନିରୋଧିଣ ବସିଛି ମହାତ୍ମା
ଦେଖି ନ ଦେଖଇ ଶୂନ୍ୟ ଶବଦ ଗାରିମା ।
ଜିହ୍ୱାକୁ ଗୋପନ କରି ଘଟିକାର ମୂଳେ
ତହିଁ ସେ ଅମୃତ ପାନ କରେ ସଦାକାଳେ
ଶୋଷକ ପୁରୁଷ ସାଧି ଜିଭସ୍ଥ କାଳକୁ

ଅମାୟାରୂପେ ବହଣ ଗୃହିଁଲ ଶୂନ୍ୟକୁ
ନାହିଁ ନାହିଁ ପବନ ଯେ ନାହିଁ ପଞ୍ଚ ଶାଖା
ନାହିଁ ଅନଳ ଅନଙ୍ଗ ନାହିଁ ବାଟରେଖା ।
ନାହିଁ ଗ୍ରାସ ନାହିଁ ଶୋଷ ନାହିଁନା ପ୍ରଶ୍ୱାସ । ଇତ୍ୟାଦି ।

ତେଣୁ ସାରଳା ଦାସ ପରମ ତାନ୍ତ୍ରିକ ଶାକ୍ତ ଥିଲେ । ତାଙ୍କର ଧର୍ମମତ ହେଉଛି ଶାକ୍ତଧର୍ମ । ମୁଁ ଏଠାରେ ସଂକ୍ଷେପରେ ଶାକ୍ତ ଧର୍ମର ଦାର୍ଶନିକ ଶକ୍ତାଧାର । ପରିଚୟ ସଂକ୍ଷେପରେ ଦେଲି । ପରେ ଶାରଳାଦାସଙ୍କର ତାନ୍ତ୍ରିକ ସାଧନା ବିଷୟ ଆଲୋଚନା କରିବାକୁ ବାଞ୍ଛା ରହିଲା ।

## ଏ ପ୍ରବନ୍ଧରେ ଉଦ୍ଧୃତ ଗ୍ରନ୍ଥମାନଙ୍କର ନାମ


୧ । ସାରଳା ମହାଭାରତ
୨ । ବିଲଙ୍କା ରାମାୟଣ
୩ । ମାଣ୍ଡୁକ୍ୟୋପନିଷଦ୍
୪ । ଶାରଦା ତିଳକ
୫ । କେନୋପନିଷଦ୍
୬ । ମହାନିର୍ବାଣ ତନ୍ତ୍ର
୭ । ଭାବ ରହସ୍ୟ
୮ । ଆନନ୍ଦ ଲହରୀ
୯ । ଅଗସ୍ତ୍ୟ ସଂହିତା
୧୦ । ସୂତ ସଂହିତା
୧୧ । ଭଗବଦ୍ ଗୀତା
୧୨ । ଦେବୀ ସୂକ୍ତ
୧୩ । ଦେବୀ ଭାଗବତ
୧୪ । ପଞ୍ଚଦଶୀ
୧୫ । ଯୋଗିନୀ ତନ୍ତ୍ର
୧୬ । କଠୋପନିଷଦ
୧୭ । ପୁରୁଷ ସୂକ୍ତ
୧୮ । ପରଶୁରାମ କଳ୍ପସୂତ୍ର
୧୯ । ସ୍ୱଚ୍ଛଭେଦ ତନ୍ତ୍ର
୨୦ । ଭୈରବଜୀକୃତ ତତ୍ତ୍ୱପ୍ରକାଶ
୨୧ । ବାମକେଶ୍ୱର ତନ୍ତ୍ର
୨୨ । ରଘୁବଂଶ
୨୩ । ଯୋଗବାଶିଷ୍ଠ ରାମାୟଣ
୨୪ । ଲକ୍ଷ୍ମୀପୁରାଣ
୨୫ । କୁଳାର୍ଣ୍ଣବ ତନ୍ତ୍ର
୨୬ । ବିଷ୍ଣୁପୁରାଣ
୨୭ । ଶ୍ରୀ ଚଣ୍ଡୀ



Digitized by srujan ka@gmail.com

# ସାରଳା ଦାସ

### ଶ୍ରୀ ବଂଶୀଧର ମହାନ୍ତି

**ଓଡ଼ିଆ ଭାଷା :—**

ଓଡ଼ିଆ ସାହିତ୍ୟର ପିତା କୁହ, ଜନ୍ମଦାତା କୁହ ବା ସ୍ରଷ୍ଟା କୁହ, ସେ ହେଉଛନ୍ତି ଅମର ବ୍ୟାସ କବି ଶୂଦ୍ର ମୁନି ସାରଳା ଦାସ । ସାରଳା ଦାସଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟର ଅବସ୍ଥା କଅଣ ଥିଲା ଏ ବିଷୟରେ ଏ ପର୍ଯ୍ୟନ୍ତ ବିଶେଷ କିଛି ସୂଚନା ମିଳି ନାହିଁ । ତେବେ ସାଧାରଣ ଭାବରେ ଓଡ଼ିଆ ଭାଷା ତଥା ସାହିତ୍ୟର ରୂପରେଖ ଖ୍ରୀଷ୍ଟୀୟ ୭ମ ଓ ୮ମ ଶତାବ୍ଦୀର ବୌଦ୍ଧ ସହଜୟା ସାହିତ୍ୟରୁ ମିଳୁଛି ଓ ତାହା ହେଉଛି ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କର ଦୋହାବଳି । ନୂତନ ଭାରତୀୟ ଆର୍ଯ୍ୟ ଭାଷାର ଉଦ୍ଭବ ଏହି ସମୟରୁହିଁ ଧରାଯାଇଛି । ଏ ପ୍ରସଙ୍ଗରେ ଓଡ଼ିଆ ଭାଷାର ପ୍ରାଚୀନତା ବିଷୟରେ ଏତିକି କହି ରଖିବାର କଥା ଯେ ଭାରତର ପୂର୍ବାଞ୍ଚଳର ଓଡ଼ିଆ, ଆସାମୀ ଓ ବଙ୍ଗଳା ଏହି ତିନି ପ୍ରଧାନ ଭାଷା ମଧ୍ୟରେ ଓଡ଼ିଆ ଭାଷାର ପ୍ରାଚୀନତା ଯଥେଷ୍ଟ ବେଶୀ ବୋଲି ଭାଷାତତ୍ତ୍ୱବିଦ୍ ପଣ୍ଡିତମାନଙ୍କର ମତ । ପ୍ରାକୃତ ବ୍ୟାକରଣ ଗ୍ରନ୍ଥ ସମୂହରେ 'କଳିଙ୍ଗର' ତଥା 'ଓଡ୍ରୀ' ଅପଭ୍ରଂଶ ଭାଷାର ସୂଚନା ମିଳୁଛି । ଏହା ଛଡ଼ା ମାର୍କଣ୍ଡେୟଙ୍କର ପ୍ରାକୃତ ସର୍ବସ୍ୱରେ ଔଡ୍ରୀ ଅପଭ୍ରଂଶର ଲକ୍ଷଣ ତଥା କେତେକ ଉଦାହରଣ ଦେଖିବାକୁ ମିଳିଥାଏ । (୧) କେବଳ ଏତିକି ନୁହେଁ ପୁରୁଷୋତ୍ତମ

(୧) ପ୍ରାକୃତ ସର୍ବସ୍ୱ—ପୃ୨୦୦—୧, ପୃ୧୨୨ ।

ଦେବଙ୍କର ପ୍ରାକୃତାନୁଶାସନ ଗ୍ରନ୍ଥରେ ମଧ୍ୟ ଔଡ୍ରୀ ଅପଭ୍ରଂଶର ନାମୋଲ୍ଲେଖ ରହିଛି । ଏହିପରି ବିଭିନ୍ନ କାରଣରୁ ବହୁ ପ୍ରାଚୀନ କାଳରୁ ଏ ଜାତିର ଓ ଏ ଭାଷାର ଐତିହାସିକ ପରମ୍ପରା ରହିଛି କହିବା ବାହୁଲ୍ୟ ମାତ୍ର । ସାରଳା ମଧ୍ୟ ତାଙ୍କ ମଧ୍ୟ ପର୍ବ ମହାଭାରତରେ ଓଡ଼ିଆ ଭାଷାର ସୂଚନା ଦେବାକୁ ଭୁଲି ନାହାନ୍ତି । କେବଳ ଓଡ଼ିଆ ଭାଷା ନୁହେଁ ତାହା ସହିତ ଭାରତୀୟ ଅନ୍ୟାନ୍ୟ ଅନେକ ଭାଷାର ସ୍ପଷ୍ଟ ଉଲ୍ଲେଖ ମଧ୍ୟ ରହିଛି । (୨) ସେ ମଧ୍ୟ ସୂଚନା ଦେଇଛନ୍ତି ଯେ ପଞ୍ଚଦଶ ଶତାବ୍ଦୀବେଳକୁ ଭାରତୀୟ ବିଭିନ୍ନ ଭାଷାରେ ୧୧ଟି ପ୍ରଧାନ ଲିପି ପ୍ରଚଳିତ ଥିଲା ଓ ୬୪ ପ୍ରକାର କଥିତ ଓ ଲିଖିତ ଭାଷା ଥିଲା । ବହୁ ପୂର୍ବରୁ ଆମ୍ଭେମାନେ ମଧ୍ୟ ଜାଣିଛୁଁ ଯେ ବୁଦ୍ଧଦେବ ଯେଉଁ ୬୪ ପ୍ରକାର ଭାଷା ଜାଣି ଥିଲେ ତନ୍ମଧ୍ୟରେ 'ଓଡ୍ର' ପ୍ରାକୃତ ନାମକ ଭାଷା ସେ ଜାଣି ଥିଲେ ।

**ସାରଳାଦାସଙ୍କ ପୂର୍ବର ଓଡ଼ିଆ ସାହିତ୍ୟ :—**

'କଳିକାଳ ଧ୍ୱଂସିଣ ଭୋଗେଣ କୋଟୀ ପ୍ରଜା
ପ୍ରଣମିତେ ଖଟନ୍ତି କପିଳେଶ୍ୱର ମହାରାଜା' ଆଃ ପଃ

ଏହି ପଦଟିରୁ ସାଧାରଣ ଭାବରେ ପ୍ରତୀତ ହୁଏ ଯେ ସାରଳା ଦାସଙ୍କର ଆବିର୍ଭାବ ତଥା ତାଙ୍କ ମହାଭାରତର ରଚନା

---

( ୨) "ଓଡ଼ିଅ ତେଲଙ୍ଗି ଯେ ନାଗେର ଦଖଣୀ
କନାଡ଼ିଙ୍କ ଅହାରଣ ଗଉଡ଼ୀ ଅଚକାୟୁଣୀ
ବରଅଷ୍ଟ ଶ୍ରମହାଟୀଶ୍ର ମାହାବିଖା
ଡାହାଲ ବେଙ୍ଗଲ ଅଦ ଯେତେ ପଞ୍ଚମ ରେଖା
ଦକ୍ଷିଣ ମଡର ଭାମେର ଭରଥି
ଭାଷା ଉଟଦେଶ ଯେ କଲେକ ଗ୍ରୀପଛ" ମଧ୍ୟ: ପଃ ପାଃ ପୃ ୮୦୩
'ସ୍ୱେକାଦଶ ଅଷର ଲିଖା ଚଉଷଠୀ" " ପୃ ୮୦୩

ଗଜପତି କପିଳେନ୍ଦ୍ରଦେବଙ୍କ ସମୟରେ ଘଟିଥିବ । ଏହାଛଡ଼ା ମଧ୍ୟ ପର୍ବରେ ପ୍ରସଙ୍ଗ କ୍ରମେ 'ଦୁର୍ଯ୍ୟୋଧନ ରାଜା ପଞ୍ଚତରଣ ଅଙ୍କରେ' (୩) ମଧ୍ୟ ଗୋଟିଏ ପଦ ମିଳୁଛି । ଓଡ଼ିଶାର ବିଶିଷ୍ଟ ପ୍ରତ୍ନତତ୍ତ୍ୱବିଦ୍ ଓ ଐତିହାସିକ ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦ୍ଦେବ ଏହି ପ୍ରକାର ଅନ୍ୟ ଗୋଟିଏ ଉଦାହରଣ ତାଙ୍କର ପ୍ରବନ୍ଧରେ ସନ୍ନିବେଶିତ କରି କହିଛନ୍ତି ଯେ ସାରଳା ଦାସ ନରସିଂହଦେବ (ଖ୍ରୀ ୧୩୦୨) ଙ୍କ ସମୟରେ ତାଙ୍କର ମହାଭାରତ ରଚନା କରିଥିଲେ । ପୁଣି ମଧ୍ୟ ପୂର୍ବୋକ୍ତ 'କପିଳେଶ୍ୱର' ନାମର ବିସ୍ତୃତରେ ସେ କହନ୍ତି ଯେ କପିଳେନ୍ଦ୍ରଙ୍କର ଖ୍ରୀ: ୧୩୦୫-୮, ଏହି ରାଜତ୍ୱ ସମୟରେ ସେ ତାଙ୍କର ମହାଭାରତ ରଚନା କରିଥିଲେ । (୪) ତେବେ ସାଧାରଣତଃ ଜଗଦ୍ଦେବ ମହାଶୟଙ୍କର ମତ ତେତେ ଗୃହୀତ ନୁହେଁ । ପୂର୍ବୋକ୍ତ 'ପଞ୍ଚବିଂଶ ଅଙ୍କ, ପଞ୍ଚତରଣ ଅଙ୍କ ଓ ଜଗଦ୍ଦେବଙ୍କ ଉଦ୍ଧୃତାଂଶ 'ଅଣତରଣଅଙ୍କ ରାହି' ପ୍ରଭୃତି ପଦରୁ ବିଚାର କରାଯାଇ ପାରେ ଯେ ସାରଳା ତାଙ୍କର ମହାଭାରତ କପିଳେନ୍ଦ୍ରଦେବଙ୍କ ରାଜତ୍ୱର ଶେଷ ଭାଗରେ ରଚନା କରିଥିଲେ ।

ତେବେ ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚନାରେ ଏକ ପ୍ରଧାନ ଅଭାବ ଏହି ଯେ ସାରଳା ଦାସଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟର ଅବସ୍ଥା କଅଣ ଥିଲା ତାହା ଭଲ ଭାବରେ ଜଣା ପଡେ ନାହିଁ । ବିଭିନ୍ନ ପ୍ରମାଣ ବଳରେ 'କଳସା ଚଉତିଶା'

---

(୩) "ଯମ୍ଭୁ ସମ୍ଭାଶନ ବୋଲି ଏକ ସମ୍ବତରେ
ଦୁର୍ଯୋଧନ ରାଜା ପଞ୍ଚ ତରଣ ଅଙ୍କରେ" ମଧ୍ୟ: ପ: ପା: ପୃ ୧୨୩
"ଦୁର୍ଯୋଧନ ରଜା ପଞ୍ଚବିଂଶ ଅଙ୍କ ରାହି" ମଧ୍ୟ: ପ:—ପୃ ୬୭

(୪) Vaitarani, 1932, P. 8.

ଯେ ସାରଳା ମହାଭାରତ ପୂର୍ବର ରଚନା ତାହା କେବଳ ସ୍ପଷ୍ଟ ଭାବରେ ପ୍ରମାଣିତ ହୋଇଛି (ଝଙ୍କାର, ୪ର୍ଥ ବର୍ଷ ୭ମ ସଂଖ୍ୟା ପୃ୬୧୧—୬୪୬ । ଉକ୍ତ ଆଲୋଚନାରେ ମଧ୍ୟ ପ୍ରାଚୀନ ପାଣ୍ଡୁଲିପିରୁ 'ଗୋରେଖ ଭଜନ' କଳସା ବାଣୀରେ ଲେଖା ହୋଇଥିବା କଥା ପଦ୍ୟର ଉଦାହରଣ ସହିତ ପ୍ରକାଶ ଲାଭ କରିଛି । ପରବର୍ତ୍ତୀ ଅନୁସନ୍ଧାନ ଏହି ଅନ୍ଧକାରମୟ ଯୁଗ ବିଷୟରେ କେତେକ ସଙ୍କେତ ଦେଇଥାଏ । ତାହା ହେଉଛି ଓଡ଼ିଆ ନାଥ ସାହିତ୍ୟ । ଏ ପ୍ରକାର ସାହିତ୍ୟର ବହୁଳତା ଓଡ଼ିଆ ସାହିତ୍ୟରେ ଥିଲେ ମଧ୍ୟ ତାହାର ଆଲୋଚନା ଏ ପର୍ଯ୍ୟନ୍ତ ହୋଇ ନାହିଁ । ସାରଳା ଦାସଙ୍କ ପୂର୍ବ ଯୁଗକୁ 'ନାଥ ସାହିତ୍ୟ'ର ଯୁଗଭାବରେ ଆଖ୍ୟାତ କରାଯାଇପାରେ । ଗୋରଖ-ନାଥଙ୍କର ସାହିତ୍ୟ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଭାରତର ବହୁଳ ଅଞ୍ଚଳରେ ବିଶେଷ ଲୋକପ୍ରିୟ ଧର୍ମସାହିତ୍ୟ ଥିଲା । ସାରଳା ଦାସଙ୍କର ମହାଭାରତରେ ମଧ୍ୟ ଏହି ଗୋରେଖନାଥଙ୍କ ନାମ ଉଲ୍ଲେଖ ବହୁ ସ୍ଥାନରେ ଦେଖିବାକୁ ମିଳିଥାଏ । ଗୋରେଖନାଥଙ୍କ ନାମ ସହିତ ବୌଦ୍ଧଗାନ ଓ ଦୋହାର ସିଦ୍ଧାଚାର୍ଯ୍ୟମାନଙ୍କର ନାମର ସାଦୃଶ୍ୟରେ ଦଣ୍ଡପା ଓ ଶିବପା ପ୍ରଭୃତି ନାମୋଲ୍ଲେଖ ମଧ୍ୟ ମହାଭାରତର ସ୍ଥାନବିଶେଷରେ ରହିଅଛି । "ଶ୍ରୀ ଗୋରେଖନାଥ ମୂଳେ ଚଉରାଅଶି ସିଦ୍ଧଙ୍କର କୋଟିଏ ଅଜ୍ଞା" ପୁଣି "ଶ୍ରୀ ଗୋରେଖ ନାଥ ବାଳମାଦତ୍ୟଙ୍କର କୋଟିଏ ଅଜ୍ଞା" (୫) ପ୍ରଭୃତି ପଦ ସହିତ

---

(୫) ମଧ୍ୟ ପର୍ବରେ ସ୍ଥାନ ବିଶେଷରେ ଗଦ୍ୟରେ ବହୁଳ ମନ୍ତ୍ର ପ୍ରଭୃତି ରହିଛି । ଅନେକ ମନ୍ତ୍ର ଲୁହୁକ ପ୍ରଭୃତିରେ ବହୁଳ ସିଦ୍ଧାଚାର୍ଯ୍ୟଙ୍କ ନାମ ସହ ଗୋରେଖ ନାଥଙ୍କର ନାମ ଦେଖିବାକୁ ମିଳିଥାଏ । ଏ ସମସ୍ତ ଉଦ୍ଧୃତାଂଶ ଯାଣ୍ଡୁଲିପିର ଉଦ୍ଧୃତାଂଶ ।

ଷଷ୍ଠପର୍ବରେ ଗୋରେଖଙ୍କର ଏକ ସ୍ୱତନ୍ତ୍ର ଚରଣ ରହିଛି (୬) 'ଷଷ୍ଠବେଦ' ନାମକ ଓଡ଼ିଆ ପ୍ରାଚୀନ ଗ୍ରନ୍ଥ ପୁଣି ଗୋରେଖନାଥ ପ୍ରଣୀତ 'ଅମରକୋଷ ଗୀତା' ନାମକ ଅନ୍ୟ ଏକ ପ୍ରାଚୀନ ଗ୍ରନ୍ଥର ସନ୍ଧାନ ମିଳିଛି । ଉଭୟର ଭାଷା ବହୁ ପ୍ରାଚୀନ ତଥା ସାରଳା ପୂର୍ବବର୍ତ୍ତୀ ଭାଷାପର ଜଣା ଯାଇଥାଏ । ଅମରକୋଷର କେତେକ ଉଦ୍ଧୃତାଂଶରେ "ଶ୍ରୀଗୋରେଖ ବନ୍ଦଇ ପାଏ । ତତ୍ତ୍ୱ-ଜ୍ଞାନଯୋଗ ଅମରକୋଷରେ ଜାଣି ।

× × ×

ବନ୍ଦଇ ଅଦ୍ୱନାଥ ଗୋରେଖ ଧାରଅ
ବନ୍ଦଇ ମଛନ୍ଦେଂଲନାଥ ଅନନ୍ତ ଦରଅ ।
ବନ୍ଦଇ ଚଉରଙ୍ଗିନାଥ ଜ୍ଞାତକର୍ମଧାରୀ,
ବନ୍ଦଇ ଗୋରେଖନାଥ ବାଳବ୍ରହ୍ମଚାରୀ" । ଇତ୍ୟାଦି
(ଅଃ କୋଃ ଗୀଃ ପୃ—୧-୨) ।

'ଷଷ୍ଠବେଦ' ନାମକ ଶ୍ଳୋକ ଓ ବ୍ୟାଖ୍ୟା ସହିତ ଯେଉଁ ଗ୍ରନ୍ଥଟି ମିଳିଛି ତହିଁରେ ନାଥ ଧର୍ମର ମହାତ୍ମ୍ୟ

---

(୬) "ଗୋରେଖ ବୋଇଲେ ଅହେ ଶୁଣସିଦ୍ଧେ ପୂତ
ଅମ୍ଭେ ସେ ଗୋରେଖ ଅହୋ ଅଟୁ ଅବଧୂତ
ଅଦନାଥେ ଅଛନ୍ତି ସେ ନିରଞ୍ଜନ ଗୋଏୀ
ତାହାଙ୍କର ପୁତ୍ର ମଛନ୍ଦ୍ର ପତି
ମଛ ଇନ୍ଦ୍ରନାଥଙ୍କର ଅଟୁ ଅମ୍ଭେ ପୁତ୍ର
ଅମ୍ଭେ ଅଟୁ ଗୋରେଖ ପଣ୍ଡିତ ଅବଧୂତ " ଷଃ ପଃ

ସବିଶେଷ ଭାବରେ ବର୍ଣ୍ଣିତ ହୋଇଅଛି (୭) । ସେହି ଶିଶୁବେଦର ବିଶ୍ୱର ସାରଳା ମହାଭାରତ, ପରବର୍ତ୍ତୀ ରଚନ ବିଷ୍ଣୁଗର୍ଭ ପୁରାଣ ଓ ପଞ୍ଚସଖାଙ୍କର ଅନ୍ୟାନ୍ୟ ଗ୍ରନ୍ଥରେ ପ୍ରାଧାନ୍ୟ ଲାଭ କରିଛି, କହିବା ବାହୁଲ୍ୟ ଯେ, ଏପରିକି ଶିଶୁବେଦର 'ଜାଲକମଳ ନିରଞ୍ଜନ' ପ୍ରଭୃତି ପଦ ଉକ୍ତ ଗ୍ରନ୍ଥ ସମୂହରେ ଅବିକଳ ଭାବରେ ଲିପିବଦ୍ଧ ହୋଇଛି । ସାରଳା ମହାଭାରତରେ ମଧ୍ୟ—

"ଋକ ଯଜୁ ଶାମ ଅଥର୍ବ ଚୃରିବେଦ ଯୋଷଇଂ
ପଞ୍ଚମ ମୁଖରେ ଶିଶୁବେଦ ଅଭ୍ୟାସଇଂ ।
× × ×
ବ୍ରହ୍ମା ବୋଇଲେ ଶିଶୁବେଦ ପଢ଼ି ନ ପାରିବି" ଇତ୍ୟାଦି
(ମଃ ପଃ ପାଃ ପୃ ୭୫୬) ।

ତେବେ ଯାହାହେଉ ନା କାହିଁକି 'କଳସା ଚଉତିଶା' ସହିତ ଅନ୍ୟାନ୍ୟ କେତେକ ନାଥଧର୍ମର ସାହିତ୍ୟ ସାରଳା ଦାସଙ୍କ ପୂର୍ବରୁ ଯେ ଦେଶରେ ପ୍ରଚଳିତ ଥିଲା ତାହା ବର୍ତ୍ତମାନ ଭଲଭାବରେ କହି ହେଉଅଛି । କେବଳ ଓଡ଼ିଆ କାହିଁକି ବଙ୍ଗଳା, ହିନ୍ଦି ଓ ଅସାମୀ ପ୍ରଭୃତି ପ୍ରାଚୀନ ସାହିତ୍ୟର ଭିତ୍ତି ମଧ୍ୟ ଏହି ନାଥଧର୍ମ ଉପରେ ଅନେକ ପରିମାଣରେ ନିର୍ଭର କରୁଛି ।

---

(୭) "ମନ ମଛଇନ୍ଦ୍ର ଶୁଦ୍ଧରେଇଶ୍ୱର ଚେତନା
ଚୈରିଙ୍ଗ ଗ୍ୟାନ ଶ୍ରୀ ଗୋରେଖ ନାଥ
ଗ୍ୟାନ ଗୁରୁ କହିଲେ ଜାଣଇଟି । ନାଥଙ୍କର କାଯ୍ବା ଲକ୍ଷଣଟି ଏ ।
ଇଲକ୍ଷା କରନ୍ତ ମିନ ଚୈରଙ୍ଗି ଗୋରେଖ ଅବଧୂତ" ଇତ୍ୟାଦି
(ଶିଶୁବେଦ)

ବୌଦ୍ଧଗାନ ଓ ଦୋହାକୁ ଭାଷା ତଥା ଅନ୍ୟାନ୍ୟ ବିଷୟରେ ଓଡ଼ିଆ ବୋଲି ପ୍ରମାଣିତ କରିବା ବ୍ୟତୀତ ଓଡ଼ିଆ ନାଥ ସାହିତ୍ୟ ଯେ ତାହା ସହିତ ଅନ୍ୟାନ୍ୟ ଅନେକ ଉପାଦାନ ଯୋଗାଇବ ତାହା କହିବା ବାହୁଲ୍ୟ ହେବ । ଇତିହାସ ଦୃଷ୍ଟିରୁ ଦେଖିଲେ ଜଣାଯାଏ ଯେ, ଏହି ଓଡ଼ିଶାର ଜଣେ ପ୍ରଧାନ ବୌଦ୍ଧତାନ୍ତ୍ରିକ ଯୋଗୀପଦ୍ମ ସମ୍ଭବ ପ୍ରଥମେ ତିବ୍ବତକୁ ଯାଇ ସେଠାରେ ତନ୍ତ୍ରଯାନର ପ୍ରଚାର କରିଥିଲେ । କାହ୍ନୁପାଦ, ଲୁଇପାଦ, ଶବରୀପାଦ ଓଡ଼ିଶା ବା ଓଡ୍ଡୀୟାନ ଦେଶରୁ ତିବ୍ବତ, ନେପାଳ ଓ ବଙ୍ଗଳା ଦେଶରେ ସହଜଯାନର ପ୍ରଚାର କରିଥିଲେ । ସାରଳା ସାହିତ୍ୟ ଓ ପଞ୍ଚସଖା ଯୁଗର ସାହିତ୍ୟ ସେହି ନୈଷ୍ଠିକ 'ସହଜସାଧନା' ଓ 'ସହଜ ସମାଧି'ର ମୁଦ୍ରାଙ୍କ ଶତାଧିକବାର ବହନ କରି ରଖିଛି । ସାରଳା ସାହିତ୍ୟ ବ୍ୟତୀତ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସିଦ୍ଧାଚାର୍ଯ୍ୟମାନଙ୍କର ନାମୋଲ୍ଲେଖରେ –

"ମାଣ୍ଡବ ଗଜତମ ଅଦମୀନ ।
ମାହିନ୍ଦ୍ର ଗାର୍ଗବ ଗୋରେଖ କାଣ ।।
ଶାୟନ୍ତନୁବ ସେ ଅନ୍ତତନ୍ତ୍ରଗା ।
ଏ ଷୋଳ ସିଦ୍ଧ ସ୍ୱରୂପେ ଦାୟିକା ।।

× × × ×

କାହ୍ନୁପା ହାଡ଼ିପା ଲୁଇପା ଲୋଇ ।
ସର୍ବେ ରଷି ବଶିଷ୍ଠ ଜାବାଲି କହି ।। (ଲୋହିଗୀତା)

କେବଳ ଏତିକି ନୁହେଁ ପୁଣି [redacted] ପ୍ରାଚୀନ ଓଡ଼ିଆ ସାହିତ୍ୟ ଗ୍ରନ୍ଥରେ ତାନ୍ତ୍ରିକ ପୀଠ "ଓଡ୍ଡୀୟାନ"ର ନାମୋଲ୍ଲେଖ ପ୍ରସଙ୍ଗ

ବିଶେଷରେ ଦେଖିବାକୁ ମିଳୁଛି (୮) । ସାରଳା ମହାଭାରତରେ ସେହି ଯୋଗୀମାନଙ୍କର ପ୍ରସଙ୍ଗରେ ଲିଖିତ ।

"ନ ଜାଣି ନିନ୍ଦା କରନ୍ତି ଯେହୁ ବୈଦ୍ୟ ଯୋଗୀ,
ଜନ୍ମେ ଜନ୍ମେ ମହାଦୋଷେ ହୁଅନ୍ତି ସେ ରୋଗୀ"—ମଃ ପଃ

ପଣ୍ଡିତ ନୀଳକଣ୍ଠ ଦାସ ପ୍ରମୁଖଙ୍କପରି ଅନେକ କବି ସମାଲୋଚକ ମଧ୍ୟ ଜୈନଧର୍ମର ତୀର୍ଥଙ୍କରଙ୍କ ନାମ ଶେଷରେ ପ୍ରଯୁକ୍ତ 'ନାଥ'ଶବ୍ଦକୁ 'ଜଗନ୍ନାଥ' ଶବ୍ଦର ଅଂଶରୂପେ ଗ୍ରହଣ କରି "ଜଗନ୍ନାଥ"ଙ୍କୁ ଜୈନ ଧର୍ମର ପ୍ରବର୍ତ୍ତକ ଋଷଭ ଦେବଙ୍କ ସହିତ ସମାନ କରୁଅଛନ୍ତି । ବୌଦ୍ଧ ତଥା "ନାଥ ସିଦ୍ଧ" ମାନଙ୍କର ନାମରେ ମଧ୍ୟ ସେହି "ନାଥ" ଶବ୍ଦ ରହିଛି । ସର୍ବୋପରି ବୈଷ୍ଣବ ଧର୍ମରେ ବିଷ୍ଣୁଙ୍କର ନାମ ପୁଣି ଶିବଙ୍କର ନାମ ମଧ୍ୟ "ଜଗନ୍ନାଥ" । ପଞ୍ଚସଖା ଯୁଗରେ "ଜଗନ୍ନାଥ" ଯେ ବୌଦ୍ଧାବତାର ତାହା ନୁହେଁ ବରଂ ସାରଳା ମହାଭାରତରେ "ଜଗନ୍ନାଥ" ବୌଦ୍ଧାବତାର ବୋଲି ବିଭିନ୍ନ ସ୍ଥାନରେ କଥିତ (୯) ।* ବୌଦ୍ଧ ଧର୍ମରେ ମୈତ୍ରେୟ ବୁଦ୍ଧଙ୍କୁ ମଧ୍ୟ କେବଳ

---

(୮) "ପଦ୍ମାସନେ ବସି ମୂଳ କମଳ ଦୃଢ଼େ
ମେରୁ ଠାଣି ଓଡ଼ିଅଣି ମଧ୍ୟେଣ ଉଡ଼େ" (ଝାଲଗିର ଗୀତା —
ଅନନ୍ତ ଦାସ) ।
"ଅଖଣ୍ଡିତ ଘଟେଳକ । ନମନ୍ତ ଓଡ଼ିଅଣି"—ଶିଶୁବେଦ

(୯) ନୀଳ କନ୍ଦର ଶିଖେ ଅପୂର୍ବ ମୂରତି
ଚତୁର୍ଦ୍ଧା ରୂପେ ରତ୍ନସିଂହାସନେ ବିଜେସ୍ଥ ଶ୍ରୀପତି ।
× × × ×
ସଂସାର ଜନଙ୍କୁ ତାରିବା ନିମନ୍ତେ
ବଉଦ୍ଧ ରୂପେ ବିଜେସ୍ଥେ କରିଛନ୍ତି ଜଗନ୍ନାଥେ । ମଃ ପଃ ପାଃ ପୃ ୨୯୬

ପୁଣି "ବନ୍ଦଇ ଜଗନ୍ନାଥ ନୀଳଗିରିବାସୀ
ବଉଦ୍ଧ ରୂପେ ନୀଳ କନ୍ଦରେ ରହି ବସି" ଇତ୍ୟାଦି ମଃ ପଃ ପାଃ
ପୃ ୬୧୬

"ନାଥ" ବୋଲି କୁହାଯାଇଛି (୧୦)। ତେଣୁ "ଜଗନ୍ନାଥ" ଶବ୍ଦର "ନାଥ" ଶବ୍ଦ ଏକ ପ୍ରଧାନ ସମସ୍ୟା ହୋଇ ରହିଛି। ଜଗନ୍ନାଥ ଓଡ଼ିଆ ସାହିତ୍ୟରେ ବୌଦ୍ଧାବତାର ଭାବରେ କଥିତ ହେଉଥିବା ସ୍ଥଳେ ଏବଂ ମୈତ୍ରେୟ ବୁଦ୍ଧଙ୍କର ନାମ "ନାଥ" ଥିବା ସ୍ଥଳେ ତାହାଙ୍କୁ ଯେ କାହିଁକି ବୌଦ୍ଧ ଦେବତା ଭାବରେ ଗ୍ରହଣ କରି ନ ହେବ ବା କାହିଁକି ଜଗନ୍ନାଥ ଧର୍ମରେ ବୌଦ୍ଧ ଧର୍ମର ମୌଳିକ ପ୍ରଭାବ ଅନୁଭୂତ ନ ହେବ ତାହା ଜଣାପଡୁ ନାହିଁ। ପୁଣି ମଧ୍ୟ କହି ରଖିବା ଉଚିତ ଯେ ଲୋକପ୍ରିୟ "ନାଥ" ଧର୍ମ ମଧ୍ୟ ବୌଦ୍ଧ ଧର୍ମ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଛି। ସାରଳା ପୂର୍ବ ସାହିତ୍ୟର ଆଲୋଚନାରେ ଏହିପ୍ରକାର ଅନେକ କିଛି ନୂତନ ତଥ୍ୟ ପ୍ରକାଶ ପାଇଥାଏ। କହିବା ବାହୁଲ୍ୟ ହେବ ନାହିଁ ଯେ ବହୁ ଅତୀତ ଯୁଗର ବିରାଟ ଇତିହାସକୁ ସାରଳା ସାହିତ୍ୟ ଗର୍ଭସ୍ଥ କରି ଅନ୍ଧକାରମୟ ପ୍ରାଚୀନ ଓଡ଼ିଆ ସାହିତ୍ୟର ଇତିହାସର ଯୁଗ ପରମ୍ପରା ନିର୍ଣ୍ଣୟରେ ବହୁ ଆଲୋକ ସମ୍ପାତ କରିଅଛି।

## ସାରଳାଙ୍କ ପୁରାଣ ରଚନାର କ୍ରମ:—

ସାରଳାଙ୍କ ପୂର୍ବରୁ "କଳସା ଚଉତିଶା" ସମେତ କେତେକ ନାଥ ସାହିତ୍ୟ ର ନମୁନା ମିଳିଛି। ସାରଳାଙ୍କର ବିପୁଳ କୃତୀ ପରି କୃତୀ ସାରଳାଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ନାହିଁ। ଓଡ଼ିଆ ସାହିତ୍ୟର ଅରୁଣୋଦୟରେ ସାରଳା ଯେଉଁ ପୁରାଣ ସାହିତ୍ୟର ବିରାଟ କୋଣାର୍କ ଗଢ଼ି ଦେଇ ଗଲେ ସେଇଥିରେହିଁ କେବଳ ଓଡ଼ିଆ ସାହିତ୍ୟ ବିରାଟତା ତଥା ବିପୁଳତା ଲାଭ କଲା।

---

(୧୦) "Natha is to be the future Maitri Buddha' etc. I. A. 1904, P. 59

ସାରଳାଙ୍କର ଆବିର୍ଭାବ ଘଟି ନ ଥିଲେ ପ୍ରାଚୀନ ଓଡ଼ିଆ ସାହିତ୍ୟର ବିଶିଷ୍ଟତା ଆଜି ଯେପରି ଉପଲବ୍ଧ ହେଉଅଛି ତାହା ଆଉ ହୋଇ ନ ଥାନ୍ତା । ଖାଣ୍ଟି ଓଡ଼ିଆ ସାହିତ୍ୟ କହିଲେ ବା ଜୀବନ୍ତ ଓଡ଼ିଆ ସାହିତ୍ୟ କହିଲେ ତାହା ସେହି ଗ୍ରାମ୍ୟକବିର ନିରାଡ଼ମ୍ବର ଗ୍ରାମ୍ୟ ଭାଷାରେ ଲିଖିତ ସେହି ପୁରାଣ ସମୂହକୁ ବୁଝାଏ ।

କପିଳେନ୍ଦ୍ର ଗଜପତିଙ୍କ ଗଙ୍ଗା ଗୋଦାବରୀ ରାଜ୍ୟର ବିଶିଷ୍ଟତା ଯେ କେବଳ ଓଡ଼ିଆ ଜାତିର ଗୌରବ ତାହା ନୁହେଁ; ସେହି ଜାତିର ଭାଷା ଓ ସାହିତ୍ୟରେ ମଧ୍ୟ ସେତେବେଳେ ସେହି ପ୍ରକାର ବିଶିଷ୍ଟତା ମୂର୍ତ୍ତିମନ୍ତ ହୋଇଅଛି । ଗଙ୍ଗବଂଶ ପରେ ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଓଡ଼ିଆ ଭାଷାକୁ ପ୍ରଥମ କରି ପ୍ରାଧାନ୍ୟ ଦେଇଥିବାର ଜଣାପଡ଼େ । କପିଳେନ୍ଦ୍ରଙ୍କର ଓଡ଼ିଶାର ମନ୍ଦିର ଗାତ୍ରରେ ଲିପିବଦ୍ଧ ଥିବା ପ୍ରାୟ ଅଧିକାଂଶ ଶିଳାଲେଖ ଓଡ଼ିଆ ଭାଷାରେ ଖୋଦିତ ହୋଇଅଛି (୧୧) ଏବଂ ଅନେକ ଭାବରେ

---

(୧୧) Oriya Inscriptions of the 15th and 16th A. D, J. A, S. B, 1893 P. 88, ଦ୍ରଷ୍ଟବ୍ୟ ।

* ଏହାଛଡ଼ା ବୁଦ୍ଧ ମଧ୍ୟ ଜଗନ୍ନାଥ ଭାବରେ ଇନ୍ଦ୍ରଭୂତି ବିରଚିତ "ଜ୍ଞାନସିଦ୍ଧି" ଓ ଅନଙ୍ଗ ବଜ୍ର ରଚିତ 'ପ୍ରଜ୍ଞୋପାୟ ବିନିଶ୍ଚୟ ସିଦ୍ଧିଃ' ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛନ୍ତି । ଜ୍ଞାନସିଦ୍ଧି ଗ୍ରନ୍ଥ ପ୍ରାରମ୍ଭରେ

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍" । ୧ ।
ଇତ୍ୟୁବାଚ ଜଗନ୍ନାଥୋ ନା ନୈ୍ୟ ବୈ ଗୁରୁବଃ ସ୍ମୃତାଃ ।୨୨।
"ଅତଏବ ଜଗନ୍ନାଥା ବାଲାନାଂ ସ୍ତୁତ ବୋଧନେ" ।୨୮।
"ତସ୍ମ ତସ୍ମ ଜଗନ୍ନାଥୈର୍ଦେଶିତଃ କରୁଣାତ୍ମଭିଃ" । ୮ ।
"ପର୍ଯ୍ୟୁପାସ୍ୟୋ ଜଗନ୍ନାଥୋ ଗୁରୁଃ ସର୍ବାର୍ଥ ସିଦ୍ଧିଦଃ ।୨୭।

ଜ୍ଞାଃ ବାଃ ସିଃ

ଏହା ଛଡ଼ା ବୁଦ୍ଧ, ବସ୍ତୁ [illegible] ଜିନଃ, ଜିତେନ୍ଦ୍ର ନାମରେ କଥିତ । ଶବ୍ଦ କଳ୍ପଦ୍ରୁମ ପୃ ୩୦୨ ଦ୍ରଷ୍ଟବ୍ୟ ।


Digitized by srujan ka@gmail.com

ସାରଳା ସାହିତ୍ୟର ଭାଷା ଓ କପିଳେନ୍ଦ୍ରଙ୍କ ଶିଳାଲେଖ ସମୂହର ଭାଷା ଏକ ପରି ଜଣାପଡ଼େ । ସାରଳାଙ୍କୁ ସ୍ମରଣ କରିବା ସହିତ "କଳବରଗ ବାହ୍ମନୀ ପତି ଗଜପତି କପିଳେନ୍ଦ୍ର"ଙ୍କୁ ମଧ୍ୟ ସ୍ମରଣ କରିବାକୁ ହେବ । କାରଣ ତାଙ୍କର ସୂର୍ଯ୍ୟବଂଶର ରାଜତ୍ୱରେ ଓଡ଼ିଆ ସାହିତ୍ୟ ଓ ଭାଷା ରୂପକ ସୂର୍ଯ୍ୟ ଅପୂର୍ବ ଦୀପ୍ତିରେ ପ୍ରକାଶ ଲାଭ କରିଛି ।

ସାରଳା ଦାସ ତାଙ୍କର ଚଣ୍ଡୀ ପୁରାଣ ଗ୍ରନ୍ଥରେ ଲେଖିଛନ୍ତି—

"ପ୍ରଥମେ ରାମାୟଣ ଦ୍ୱିତୀୟେ ମହାଭାରତ
ତ ତୀୟେ ଲେଖନ ମୁଁ କଲିଇ ଭାଗବତ ।"

ଚଃ ପୁଃ ପା—ପୃ୬୭

ଏଥିରୁ ଜଣାଯାଏ ଯେ କବି ପ୍ରଥମରେ ବିଲଙ୍କା ରାମାୟଣ, ଦ୍ୱିତୀୟରେ ମହାଭାରତ ଓ ତୃତୀୟରେ ଚଣ୍ଡୀପୁରାଣ ରଚନା କରିଥିଲେ । ମୂଳ ବା ପାଣ୍ଡୁଲିପି ବିଲଙ୍କା ରାମାୟଣ ପାଠରେ ଜଣାଯାଏ ଯେ କବିଙ୍କର ପ୍ରଥମ ନାମ ଥିଲା ସିଦ୍ଧେଶ୍ୱର ଦାସ । ମୃତ୍ୟୁଞ୍ଜୟ ରଥ ମହାଶୟ କବିଙ୍କର ନାମ ସିଦ୍ଧେଶ୍ୱର ପରିଡ଼ା ଥିଲା ବୋଲି ତାହାଙ୍କର 'ଶାରଳା ଚରିତ'ରେ ଯାହା କରିଅଛନ୍ତି, ତାହା ପ୍ରମାଦ ବୋଲି ମନେ ହୋଇଥାଏ (୧୨) । କାରଣ ଝଙ୍କଡ଼-ପ୍ରଗଣାରୁ ମିଳିଥିବା ବିଲଙ୍କା ରାମାୟଣ ପୋଥିରେ ଅଷ୍ଟର୍ଦ୍ଧର

---

(୧୨) ଆଦି କବି ସାରଳା ଦାସ, ମୁକୁର, ୫ ଭାଗ ପୃ୬୭ "କୃଷି ତାଙ୍କର ଜାତୀୟ ବ୍ୟବସାୟ । କବିଙ୍କର ପୂର୍ବ ନାମ ସିଦ୍ଧେଶ୍ୱର ଥିଲା ବୋଲି କିମ୍ବଦନ୍ତୀରୁ ପ୍ରକାଶ ପାଏ । ତାହାହେଲେ ପୂର୍ଣ୍ଣ ନାମ 'ସିଦ୍ଧେଶ୍ୱର ପରିଡ଼ା" । କେହି କେହି ପୂର୍ବ ନାମ ଶାରଳ ସ୍ୱାଇଁ ବୋଲି କହନ୍ତି" ଇତ୍ୟାଦି ।

ସହୁତ ପ୍ରତ୍ୟେକ ସ୍ଥାନରେ "ସିଦ୍ଧେଶ୍ୱର ଦାସ" ଏହି ଭଣିତ ଦେଖିବାକୁ ମିଳଇ (୧୩) । ଗ୍ରନ୍ଥଟି ଅମୂଳ ଚୂଳ ଦାଣ୍ଡି ବୃତ୍ତରେ ଲିଖିତ । କିନ୍ତୁ ପ୍ରକାଶିତ ବିଲଙ୍କା ରାମାୟଣରେ କେବଳ ତିନୋଟି ସ୍ଥାନରେ ସିଦ୍ଧେଶ୍ୱର ଦାସ ଭଣିତ ଛଡ଼ା ସର୍ବତ୍ର "ଶାରଳା ଦାସ" ଏହି ନାମର ଭଣିତ ରହିଛି ।

ତେଣୁ ସ୍ପଷ୍ଟ ଭାବରେ ଜଣାଯାଏ ଯେ ବିଲଙ୍କା ରାମାୟଣ କବି ରଚନା କରିବାବେଳେ ତାଙ୍କର ନାମ ଥିଲା ସିଦ୍ଧେଶ୍ୱର ଦାସ । କିନ୍ତୁ ମହାଭାରତ ପରି ବିରାଟ ଗ୍ରନ୍ଥ ଆରମ୍ଭ କଲାବେଳେ କବି ସାରଳା ଦେବୀଙ୍କର ଦାସ ଭାବରେ ଶରଣ ନେଇଅଛନ୍ତି । ପରବର୍ତ୍ତୀ ଚଣ୍ଡୀ ପୁରାଣରେ ମଧ୍ୟ ସର୍ବତ୍ର "ସାରଳା ଦାସ" ଏହି ଭଣିତ ରହିଅଛି । ଆଦ୍ୟ ପର୍ବର ପ୍ରାରମ୍ଭରେ ସେ କହିଅଛନ୍ତି :—

"ଶ୍ରୀମତୀର ବାଳ୍ମିକ ଚରଣେ ନିଜ ଦାସ
ବଦନ୍ତି ଗ୍ରନ୍ଥକ ଶୂଦ୍ର ମୁନି ସାରଳା ଦାସ ।

ଆ: ପ: ପା: ପୃ୩

ଏହାଛଡ଼ା ସେହି ଆଦ୍ୟ ପର୍ବ ପ୍ରାରମ୍ଭରେ ଦ୍ୱିତୀୟ ସ୍ଥାନରେ ଅଧିଷ୍ଠାତ୍ରୀ ଦେବୀ ସାରଳାଙ୍କର ପ୍ରସଙ୍ଗରେ କହିଅଛନ୍ତି—

---

(୧୩) ପୃ—୨ "ଶ୍ରୀ ହରିନାମ ଗୋଟି କରନ୍ତରେ ଘୋଷ,
ଶ୍ରୀହରି ଚରଣେ ଶରଣ ସିଦ୍ଧେଶ୍ୱର ଦାସ ।
ପୃ୨୫— ଶ୍ରୀରାମ ନାମ ଗୋଟି କରନ୍ତରେ ଘୋଷ,
ଶ୍ରୀ ରାମ ଚରଣେ ଶରଣ ସିଧେଶ୍ୱର ଦାସ ।
ପୃ୬୮— ଶ୍ରୀରାମ ଚରଣେ ଶରଣ ସିଧେଶ୍ୱର ଦାସ,
ପୃ୮୭—ତାହାଙ୍କୁ ଶରଣ ଯେ ସିଧେଶ୍ୱର ଦାସ ।
ପୃ୨୩୫— ଶିବର ଘରଣୀ ପାଦେ ସିଧେଶ୍ୱର ଦାସ
ଶରଣ ପଶଇ ।"

"ଚନ୍ଦ୍ରଭାଗା ନାମ ଯେ ଏକଇ ନଦୀ ଗୋଟି
ବୃଦ୍ଧମଡାଙ୍ଗ ପାର୍ଶ୍ୱରେ ମହୋଦଧିରେ ଯାଇଁ ଫୁଟି
ସେ ନଦୀର ତୀରେ ପଶ୍ଚିମ ଘାଟଇଂ
କନକବତୀ ନାମେ ପାଟଣା ପ୍ରକାଶଇ ।
ତହିଁର ଅନୁଜ ଯେ ଶାରୋଳ ବୋଲି ଗ୍ରାମେ
ବିଜେ ମାହେଶ୍ୱରୀ ସେ ଶାରୋଳ ଚଣ୍ଡୀ ନାମେ ।'

ଆଃ ପଃ ପାଃ ପୃ ୩

ସେହି ସାରଳା ଚଣ୍ଡୀଙ୍କର ଆଜ୍ଞାରେ କବି ମହାଭାରତ ଲେଖିଅଛନ୍ତି ଏକଥା ମଧ୍ୟ ସେ କେବଳ ଏଠାରେ ନୁହେଁ ମହାଭାରତ ଓ ଚଣ୍ଡୀ ପୁରାଣର ବିଭିନ୍ନ ସ୍ଥାନରେ ଉଲ୍ଲେଖ କରି-ଅଛନ୍ତି । ସେହି ଆଦିପର୍ବର ପ୍ରାରମ୍ଭରେ କବି କହୁଅଛନ୍ତି ।

"ସାରୋଳ ଚଣ୍ଡୀନାମ ଅଟଇ ସେ ଦେବୀ
ତାହାର ପୁତ୍ର ମୁଁ ଅଟଇ ଶାରୋଳ କବି
ପ୍ରସନ୍ନେ ଆଜ୍ଞା ମୋତେ ଦେଲେ ଶାକାମ୍ବରୀ
ଇଚ୍ଛ ତୁ କପିଳାସ ମହାଭାରତ କର ।"

ଇତ୍ୟାଦି, ଆଃ ପଃ ପାଃ ପୃ ୪

## ସାରଳା ମହାଭାରତରେ ପାଠର ବିଭିନ୍ନତାଃ—

ଓଡ଼ିଶାରେ ବିଭିନ୍ନ ଅଞ୍ଚଳରେ ଏପରିକି ଓଡ଼ିଶା ବାହାରେ ସାରଳା ମହାଭାରତ ଲୋକପ୍ରିୟ ଗ୍ରନ୍ଥଭାବରେ ପ୍ରଚଳିତ (୧୪) । ମେଦନୀପୁରର କାନ୍ଥିଅଞ୍ଚଳ ଏବଂ ବଙ୍ଗଳାରେ ମଧ୍ୟ ସାରଳା ମହାଭାରତ ବିରାଟ ପର୍ବର ଅନୁବାଦ ପ୍ରଚଳିତ । ସାରଳାଙ୍କର

(୧୪) Typical Selections from Oriya literature, Vol 1, Introduction.

ରଚନା ଅନ୍ତକୁ ପ୍ରାୟ ୫୦୦ ବର୍ଷରୁ ଅଧିକ କାଳର ରଚନା । ଏହି ୫୦୦ ବର୍ଷ ଭିତରେ ମହାଭାରତର ଭାଷାରେ ଅନେକ କିଛି ପରିବର୍ତ୍ତନ ହୋଇଯାଇଛି । ବର୍ତ୍ତମାନର ପ୍ରକାଶିତ ମହାଭାରତ ଯଥାର୍ଥ ସାରଳା ମହାଭାରତ ନୁହେଁ ।

ଏବେ ଗଞ୍ଜାମ ଅଞ୍ଚଳରୁ ପ୍ରାପ୍ତ ଗୋଟିଏ ମହାଭାରତ ଗ୍ରନ୍ଥ ଦେଖି ବିଶେଷ ଆଶ୍ଚର୍ଯ୍ୟ ହେବାକୁ ପଡ଼ିଲା । ଏକେତ ତହିଁରେ ଦାଣ୍ଡିବୃତ୍ତର ବିଶେଷ ଅଭାବ, ଦ୍ୱିତୀୟରେ ସାରଳା ଦାସଙ୍କର କବିତ୍ୱ ସ୍ଫୂର୍ତ୍ତି ସମ୍ବନ୍ଧରେ ଅସମ୍ଭବ ଧରଣର କିମ୍ବଦନ୍ତୀ ଗ୍ରନ୍ଥର ମୂଳରେ ସ୍ଥାନ ଲାଭ କରିଛି । ବିରଜା ମଣ୍ଡଳରେ ସାରଳା ଦାସ ହଳ କରୁଥିବାବେଳେ ସାରଳା ଦେବୀ ବୃଦ୍ଧା ନାରୀ ରୂପରେ ଅବତୀର୍ଣ୍ଣା ହୋଇ ସାରଳାଙ୍କୁ ନଈ ପାର କରାଇ ଦେବାକୁ କହିଛନ୍ତି । ସାରଳା ହଳ ଛାଡ଼ି ବୃଦ୍ଧା ନାରୀଙ୍କୁ ନଈ ପାର କରାଇବାବେଳେ ବୃଦ୍ଧା କୃଷିକାରୀଙ୍କୁ କହିଛନ୍ତି ଗୀତ ପଦେ ଗାଇବାକୁ । ଏ ପ୍ରଶ୍ନରେ ସାରଳା ଉତ୍ତର ଦେଇଛନ୍ତି—

"କୃଷିକାର ବୋଇଲେ ମାଗୋ ମୂର୍ଖ ମୋର ମତି
ନ ଆସେ ପଦ କେମନ୍ତେ କରିବି ଭଗତି
ଅମ୍ଭେ ବୋଲୁ ଅଛୁରେ ହେଉ ତୋହର ଜ୍ଞାନ
ଶ୍ରୀମହାଭାରତ ଏବେ କର ତୁ ଲେଖନ ।

ଗଞ୍ଜାମ ପାଃ ଅଃ ମଃ ପୃ୨

ଏହିପରି କପୋଳ କଳ୍ପିତ ଲୋକକଥା କ୍ରମେ ମହାଭାରତରେ ସ୍ଥାନ ପାଇଛି । ପ୍ରବନ୍ଧାବଳୀରେ ଶ୍ୟାମସୁନ୍ଦର ରାଜଗୁରୁ ମହାଶୟ ମଧ୍ୟ ଏହି ବିଷୟର ଉଲ୍ଲେଖ କରି କହିଅଛନ୍ତି ଯେ ସେ "ଏହି ବିଷୟରେ ଖଣ୍ଡିଏ ହସ୍ତ ଲିଖିତ ପୁସ୍ତକ" ଦେଖି

ଥିଲେ ଓ ତହିଁରେ ଏ ପ୍ରକାର ବିଷୟର ଉଲ୍ଲେଖ ଥିବାର ବର୍ଣ୍ଣନା ଦେଇ ଅଛନ୍ତି । (୧୨) ଏହିପରି ଅନେକ ପ୍ରକ୍ଷିପ୍ତାଂଶ ମଧ୍ୟ ବର୍ତ୍ତମାନର ସାରଳା ମହାଭାରତ ଓ ତାଙ୍କର ଅନ୍ୟାନ୍ୟ କୃତୀରେ ଏପରି ଭାବରେ ସ୍ଥାନ ଲାଭ କରିଛି ଯେ ତହିଁରେ ସାରଳା ପ୍ରତିଭାର ପରିଚୟ ପାଇବା ଅସମ୍ଭବ ହୋଇ ପଡ଼ୁଛି ।

**ବିଲଙ୍କା ରାମାୟଣ ଓ ଅଦ୍ଭୁତ ରାମାୟଣ :—**

କବିଙ୍କର ପ୍ରଥମ ରଚନା ବିଲଙ୍କା ରାମାୟଣ ଓ ସଂସ୍କୃତ ଅଦ୍ଭୁତ ରାମାୟଣର ବିଷୟ ବସ୍ତୁରେ ଅନେକ କିଛି ସାମଞ୍ଜସ୍ୟ ଦେଖାଯାଏ । ଓଡ଼ିଆରେ ମଧ୍ୟ ଏହି ଅଦ୍ଭୁତ ରାମାୟଣ କପିଳେଶ୍ୱର ବିଦ୍ୟାଭୂଷଣଙ୍କ ଦ୍ୱାରା ଅନୁବାଦିତ ହୋଇ ପ୍ରକାଶ ପାଇଛି । (୧୫) ପୁଷ୍କର ସ୍ଥିତ ସହସ୍ର ମୁଖ ରାବଣକୁ ରାମଚନ୍ଦ୍ର ମାରିପାରି ନାହାନ୍ତି । ଶେଷରେ ସୀତାଙ୍କର ଶକ୍ତି ଲାଭରେ ରାମ ସହସ୍ରଶିର ରାବଣକୁ ମାରିଛନ୍ତି । ସହସ୍ରଶିର ରାବଣ ସହିତ ଯୁଦ୍ଧରେ ରାମ ପରାହତ ହୁଅନ୍ତେ ସୀତା ଉଗ୍ରରୂପ ଧାରଣ କରି ଅଛନ୍ତି । କୋପରେ ସୀତା ଅସଂଖ୍ୟ ମାତୃଗଣଙ୍କୁ ପ୍ରକାଶ କରିଅଛନ୍ତି—

ରୋମ କୂପରୁ ଜାନକୀ ସହସ୍ର ସଂଖ୍ୟାରେ
କଲେ ଜାତ ମାତୃଗଣଙ୍କୁ କୋପରେ ।" ଅଃ ରାଃ ପୃ ୯୧

ସେ ମାତୃଗଣମାନଙ୍କର ନାମର ବର୍ଣ୍ଣନା ଅନେକାଂଶରେ ଶ୍ରୀପୁରାଣର ମାତୃକଣମାନଙ୍କ ନାମର ବର୍ଣ୍ଣନା ସହିତ ସାମ୍ୟ ରଖିଛନ୍ତି କହିବା ବାହୁଲ୍ୟ ମାତ୍ର । 'ସୀତାଙ୍କର ଏ ପ୍ରକାର ଉଗ୍ରମୂର୍ତ୍ତି ସନ୍ଦର୍ଶନରେ ସ୍ୱୟଂ ଶିବ ମଧ୍ୟ ଶବ ରୂପରେ ସୀତାଙ୍କର ଶରଣ ନେଇ ଅଛନ୍ତି । ଅଦ୍ଭୁତ ରାମାୟଣର ସୀତା ଅନ୍ୟ କେହି ନୁହନ୍ତି ।

(୧୨) ପ୍ରବନ୍ଧାବଳୀ ପୃ ୫୩—୫୪ ।
(୧୫) ଅଦ୍ଭୁତ ରାମାୟଣ, କଟକ ପ୍ରିଣ୍ଟିଂ କମ୍ପାନୀ, ୧୯୦୧ ।

ସେ ହେଉଛନ୍ତି କାଳଶକ୍ତି, କ୍ରିୟାଶକ୍ତି ଓ ପ୍ରାଣଶକ୍ତିର ପରମ ପ୍ରକାଶ ମାତ୍ର । ସହସ୍ରଶିରା ରାବଣର ମୃତ୍ୟୁ ପରେ ରାମ ସୀତାଙ୍କୁ ତାଙ୍କର ପ୍ରାର୍ଥନା କରିଅଛନ୍ତି ଏବଂ "ସକଳ ଶକ୍ତିଙ୍କ ମଧ୍ୟେ ଅଟ ତୁମ୍ଭେ ମାୟା" ବୋଲି ମୁକ୍ତ କଣ୍ଠରେ ବନ୍ଦନା କରିଅଛନ୍ତି ।

ବିଲଙ୍କା ରାମାୟଣରେ ଏହି ବିଷୟଟି କବିଙ୍କଦ୍ୱାରା ପ୍ରକାରାନ୍ତରେ ବର୍ଣ୍ଣିତ ହୋଇଛି । ସେହିପରି କି ମହାଭାରତ ବା ଚଣ୍ଡୀପୁରାଣ ସବୁର ମୌଳିକ ବିଷୟ ଉପରେ ଯେ କବି ସ୍ୱୀୟ ପ୍ରତିଭାର ଉତ୍କର୍ଷ ଦେଖାଇ ଅଛନ୍ତି କହିବା ଅତିରଞ୍ଜନ ମାତ୍ର ।

**ଦାଣ୍ଡି ବୃତ୍ତ :—**

ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକ ପ୍ରଧାନ ବୈଶିଷ୍ଟ୍ୟ ହେଉଛି ତାହାର ଦାଣ୍ଡି ବୃତ୍ତ । ଓଡ଼ିଆରେ ଏହି ଦାଣ୍ଡି ବୃତ୍ତର ରଚନା ମୁଖ୍ୟତଃ ସାରଳା ଦାସଙ୍କଠାରୁ ଆରମ୍ଭ ବୋଲି ଜଣାଯାଏ । ବିଲଙ୍କା ରାମାୟଣରେ ଦାଣ୍ଡି ବୃତ୍ତର ପ୍ରସାରତା ତେତେ ନାହିଁ, ଏହି ଦାଣ୍ଡି ବୃତ୍ତ ମହାଭାରତ ଗ୍ରନ୍ଥରେହିଁ ବିଶେଷ ପ୍ରସାର ଲାଭ କରିଛି । ସ୍ଥାନ ବିଶେଷରେ ଗୋଟିଏ ଗୋଟିଏ ପାଦ ୯ ଅକ୍ଷରରୁ ଆରମ୍ଭ ହୋଇ ୩୨ ଅକ୍ଷର ପର୍ଯ୍ୟନ୍ତ ଥିବାର ଦେଖାଯାଏ । *ମଧ୍ୟପର୍ବ ମହାଭାରତର ଗୋଟିଏ ପଦର ଉଦାହରଣରେ ଗୋଟିଏ ପାଦ ୧୩ ଅକ୍ଷର ଓ ଅପରଟି ୩୨ ଅକ୍ଷର ।

ଖଦଡ଼ ସେନର ଯେ ମେହିଲ ସନ୍ତତି ।

ସମୁଦ୍ରକୂଳେ ତପ କରଇ ସର୍ବେ ନିତ୍ୟାପି ଥିଲା ନଗ୍ରୀକୁ ସମୁଦ୍ର ଦଶ ଯୋଜନ ପରିଯନ୍ତି । (୩୨) ଏହିପରି ସାରଳାଙ୍କ ଗ୍ରନ୍ଥ ସମୂହରେ ପାଦ ଗୁଣ୍ଠନରେ ବିରାଟ ବୈଷମ୍ୟ ପ୍ରତ୍ୟେକ ସ୍ଥାନରେ ଲକ୍ଷିତ ହୁଏ । ପୁରାଣ ପ୍ରକାଶିକା ବା କଟକ 'ପ୍ରିଣ୍ଟିଂ କୋମ୍ପାନୀଙ୍କ

ଅଙ୍କତା ତଥା ଭାଗବତ ଓ ଧ୍ଲପା ଦୃଷ୍ଟିରୁ କେତେଗୁଡ଼ିଏ ନୂଆ ସାରଳା ଦାସ ନିଯୁକ୍ତ ହୋଇ ଯେଉଁ ମହାଭାରତ ସୃଷ୍ଟି କଲେ ତହିଁରେ ସାରଳାଙ୍କର ମହତ୍ତ୍ୱ ଦୃଷ୍ଟିଭାବରେ ନଷ୍ଟ ପାଇଗଲା । ସେହିପରି ସାରଳାଙ୍କର ପ୍ରତ୍ୟେକ କୃତରେ ଏହି ପ୍ରକାର ମନୋଜ୍ଞ ପରିବର୍ତ୍ତନ କରାଯାଇଛି । ସାରଳାଙ୍କଠାରୁ ଏହି ଦାଣ୍ଡି ବୃତ୍ତ ବିଶେଷ ଭାବରେ ପୂର୍ଣ୍ଣି ଲାଭ କରି ଦେଶର ପରବର୍ତ୍ତୀ କବିଙ୍କର ଲେଖାମାନରେ ବିଶେଷ ଲୋକପ୍ରିୟ ହେଲା । ଚୈତନ୍ୟଦାସଙ୍କର ବିଷ୍ଣୁଗର୍ଭ ପୁରାଣ, ବଳରାମ ଦାସଙ୍କର ଦାଣ୍ଡି ରାମାୟଣ, ଅଚ୍ୟୁତାନନ୍ଦଙ୍କର ହରିବଂଶ ଓ ଅନ୍ୟାନ୍ୟ ଅନେକ ଅପ୍ରକାଶିତ ଗ୍ରନ୍ଥ ଦାଣ୍ଡି ବୃତ୍ତରେ ରଚିତ ହୋଇଅଛି ।

ପ୍ରାକୃତ ପିଙ୍ଗଳ ଛନ୍ଦ ଗ୍ରନ୍ଥରେ ମଧ୍ୟ 'ଦଣ୍ଡି' ନାମକ ଏକ ବୃତ୍ତ ଥିବାର ଲକ୍ଷ୍ୟ କରାଯାଏ । ଏହା ଛଡ଼ା ଅପଭ୍ରଂଶ ଭାଷାରେ ଦାଣ୍ଡି ନାମକ ବୃତ୍ତ ମଧ୍ୟ ଏକ ସମୟରେ ବିଶେଷ ଭାବରେ ପ୍ରଚଳିତ ଥିଲା (୧୭) । କ୍ରମେ ଏହି ଅପଭ୍ରଂଶରେ ବ୍ୟବହୃତ

(୧୬) ପ୍ରାକୃତ ପିଙ୍ଗଳ ପୃ୨୬୯

(୧୭) Apabhramsa and Marathi Metres—N, I, A 1938, Vol. I, PP 215-228,

"The Dindi is to be traced to an Apabhrmsa Catuspadi Galitaka, containing 19 Matras in each of its four lines"

"The name Dindi is very probabely to be derived from the Sanskrit Dindima and not from Dandika" etc. Ibid P.226.

* ଅନ୍ୟତ୍ର ସେହିପରି ମଧ୍ୟ ପର୍ବ ମହାଭାରତରେ :—

"ସେ ବ୍ରହ୍ମାର ନାମ ସାବିତ୍ରୀ (୯)

ଦାଣ୍ଡି ବୃତ୍ତ ପରବର୍ତ୍ତୀ ସାହିତ୍ୟର ଯୁଗରେ ଭିନ୍ନ ରୂପେ ବ୍ୟବହୃତ ହୋଇଥିଲା । ବିଗ୍ରହ କରିବା ଅସଙ୍ଗତ ନୁହେଁ ।

ଓଡ଼ିଆ ସାହିତ୍ୟର ସ୍ରଷ୍ଟା ସାରଳାଦାସ:—

ଏହି କ୍ଷୁଦ୍ର ପ୍ରବନ୍ଧରେ ସାରଳାଙ୍କର କବି ପ୍ରତିଭା, ତାଙ୍କର ସାହିତ୍ୟ, ଭାଷା ବା ସାହିତ୍ୟର ବିଭିନ୍ନ ବିଭାବ ପୁଙ୍ଖାନୁପୁଙ୍ଖ ରୂପେ ବିଗ୍ରହ କରିବା ବିଡ଼ମ୍ବନା ମାତ୍ର । ଏଥିରେ କେବଳ ତାଙ୍କ ମହାନ ପ୍ରତିଭାର ସ୍ମରଣ କରିବାହିଁ ଆମର ଲକ୍ଷ୍ୟ । ଶାକ୍ତ କବି ସାରଳାଙ୍କର ପ୍ରତ୍ୟେକ କୃତୀରେ ଆମେ ପ୍ରଧାନ ଭାବରେ ଓଡ଼ିଶାରେ ଶାକ୍ତ ଧର୍ମର ଏକ ବିସ୍ତୃତ ଇତିହାସ ପାଇଥାଉଁ (୧୮)। କେବଳ ଶାକ୍ତ ଧର୍ମ ତ ନୁହେଁ ପୂର୍ବବର୍ତ୍ତୀ ସହଜିୟା ଧର୍ମର ବହୁ ବିସ୍ତୃତ ବର୍ଣ୍ଣନା ମଧ୍ୟ ସ୍ଥାନ ବିଶେଷରେ ପରିଦୃଷ୍ଟ ହୋଇଥାଏ । ଏହା ଛଡ଼ା ବୈଷ୍ଣବ ଧର୍ମ- ଶୈବ ଧର୍ମ ଓ ଅନ୍ୟାନ୍ୟ ଧର୍ମ ସମ୍ବନ୍ଧୀୟ ତତ୍ତ୍ୱର ବହୁ ବର୍ଣ୍ଣନା ରହିଛି । ଯେଉଁ ଶୂନ୍ୟବାଦ ପରବର୍ତ୍ତୀ ପଞ୍ଚସଖା ଯୁଗର ସାହିତ୍ୟରେ ପ୍ରାଧାନ୍ୟ ଲାଭ କରି ଏକ ବିଶିଷ୍ଟ ଯୁଗ ସାହିତ୍ୟର ଧାରାକୁ ଓତଃପ୍ରୋତ ଭାବରେ ପ୍ଲାବିତ କରିଥିଲା ସେହି ଶୂନ୍ୟବାଦର ମୌଳିକ ସ୍ୱରୂପ ସେହି ସାରଳାଙ୍କର କୃତୀ ସମୂହରେହିଁ ସ୍ଥାନ ଲାଭ କରିଛି (୧୯)।

---

ତା ତହୁଁ ଦୋହଚାସ୍ୟେ ହୋଇବ ସରସ୍ୱତ (୧୪)

(୧୮) New life—Vol III, 'ସାରଳା ମହାଭାରତରେ ଧର୍ମ' ପ୍ରବନ୍ଧ ଦ୍ରଷ୍ଟବ୍ୟ ।

(୧୯) "ଅପୂର୍ବ ସିଂହାସନରୁ ପଶ୍ଚାନ୍ତର ନାହିଁ
ଅଣାକାର ବିଷ୍ଣୁ ପଦ୍ମେ ବସେକ କରି ଅଛନ୍ତି" ମ. ପ. ପୃ୬୧୬
"ପ୍ରତକ୍ଷେ ନିରଞ୍ଜନ ବୁଦ୍ଧ ସେ ନିରାକାର
ନମସ୍ତେ ନିରାକାର ନିରଞ୍ଜନ ବାମପାଳ" ମ. ପ: ପୃ ୫୬୨

ଯେଉଁଠି ଶକ୍ତି ଶୂନ୍ୟ, ଶିବ ଶୂନ୍ୟ, ଜଗନ୍ନାଥ, ବଳରାମ ଏବଂ ଶିବ ମଧ୍ୟ ଶୂନ୍ୟ ଭାବରେ ବର୍ଣ୍ଣିତ ହୋଇଅଛନ୍ତି ।

ଓଡ଼ିଆ ସାହିତ୍ୟର ଯଦି କିଛି ସ୍ଥାୟୀ ସମ୍ପଦ ଥାଏ ତାହା ହେଉଛି ସେହି ସାରଳା ସାହିତ୍ୟ । ପଞ୍ଚଦଶ ଶତାବ୍ଦୀରେ ସୁବିସ୍ତୃତ ଓଡ଼ିଶା ରାଜ୍ୟର ଏକ ପୂର୍ଣ୍ଣାଙ୍ଗ ଇତିହାସ ଏହି ସାରଳାଙ୍କର କୃତି ସମୂହରେ ପ୍ରଚ୍ଛନ୍ନ ଭାବରେ ରହିଅଛି । ଓଡ଼ିଶାର ଅର୍ଥନୀତି, ସାମାଜିକ ଗୃହଚଳଣି, ରାଜନୀତି ସର୍ବୋପରି ପଞ୍ଚଦଶ ଶତାବ୍ଦୀ ଓଡ଼ିଶାର ସମର ବିଭବ ସାରଳାଙ୍କ ଗ୍ରନ୍ଥ ସମୂହର ବିଭିନ୍ନ ଦିଗ୍ଭାବରେ ଚର୍ଚ୍ଚିତ । ସାରଳା ମହାଭାରତ ଓଡ଼ିଆ ଜାତିର ସାଂସ୍କୃତିକ ଇତିହାସ କହିବା ବାହୁଲ୍ୟ ମାତ୍ର । ମହାଭାରତ ପରି ବିରାଟ ଗ୍ରନ୍ଥ ଲେଖାର ଅଧ୍ୟବସାୟ କଥା ନିଜେ ମଧ୍ୟ ଉପଲବ୍ଧି କରି ଦେଇଛନ୍ତି ।

"ଲେଖିଲେ ଶତଭାର ହୋଇଲା ସେ ଯନ୍ତ୍ରଂ
ତେଣୁ କରି ମହାଭାରତ ନାମ ହୋଇଲା ତନ୍ତ୍ରଂ"
ମ: ମ: ପା: ପୃ ୩୩୧

ଯାହା ଯେତେ କପୋଳ କଳ୍ପିତ କଥା ବା ଅପ୍ରାସଙ୍ଗିକତା ସାରଳା ମହାଭାରତ ତଥା ତାଙ୍କର 'ଅନ୍ୟାନ୍ୟ ରଚନାରେ ଥାଉ ପଛକେ ସେହି ମୌଳିକତାକୁ ନେଇ ଆଜି ସାରଳାଙ୍କର ପ୍ରତିଭା ଉପଲବ୍ଧି କରିଥାଉଁ । ପଞ୍ଚଦଶ, ଶତାବ୍ଦୀର ଶିଳ୍ପ, ବାଣିଜ୍ୟ ବ୍ୟବସାୟ, ଲୋକାଗୃର ସବୁର ଠିକ ନକ୍ସ ବିବରଣାତ୍ମକ ଗ୍ରନ୍ଥ

---

"ଇନ୍ଦ୍ରାୟୁ ପାଳକ ନାଥ ଅଚ୍ୟୁତ ନାରାୟଣ
ଆଦି ଧର୍ମ ନିରାକାର ପରମ କାରଣ" ମ; ପ: ପୃ ୩୦୨
ଜୟ ଜୟ ନାରାୟଣ ଅନାଦି ନିରାକାର" ମ: ପ: ପୃ ୩୨୦
ଇତ୍ୟାଦି ।

ସେହି ବିରାଟ ସାରଳା ସାହିତ୍ୟ । ଓଡ଼ିଶାର ରାଜାରାଣୀ, ହାଟ ଘାଟ ପ୍ରଜା ପାଟକଠାରୁ ଆରମ୍ଭ କରି ଧାଇ ମୁଦୁସିଲି ପର୍ଯ୍ୟନ୍ତ ସମାଜର ପ୍ରତ୍ୟେକ ସ୍ତରର ଲୋକଙ୍କର ଦୈନନ୍ଦିନ ଜୀବନର ଚିତ୍ର ସୁନ୍ଦର ଭାବରେ ସେହି ଗ୍ରନ୍ଥ ସମୂହରେ ବିନ୍ୟସ୍ତ ହୋଇ ରହିଛି । ପ୍ରାଚୀନ ଓଡ଼ିଶାର ଲୁପ୍ତ ସଂମ୍ପଦର ଗୌରବ ଓ ତାହାର ବିରାଟ ଗଙ୍ଗା ଗୋଦାବରୀ ଦେଶ ଆଜି କଳ୍ପନାର ଅତୀତ ହୋଇଥିଲେ ମଧ୍ୟ ସେହି ପ୍ରାଚୀନ ଓଡ଼ିଶାର ରଣ ଦୁନ୍ଦୁଭିର ଝଙ୍କାର ସେହି ମହା-ଭାରତ ପ୍ରଭୃତି ଗ୍ରନ୍ଥର ସମର ସମ୍ଭାର ଅନ୍ତରାଳରେ ଅଦ୍ୟାପି ଧ୍ୱନିତ ହେଉଅଛି । କହିବା ବାହୁଲ୍ୟ ଯେ ସାରଳାଙ୍କର କୃତୀ ସମୂହ ଏକ ଉଜ୍ଜ୍ୱଳ କବି ପ୍ରତିଭା ସମ୍ପନ୍ନ ମହାକାବ୍ୟ, ମହାପୁରାଣ, ପ୍ରାଚୀନ ସାମାଜିକ ଓ ଐତିହାସିକ ଉପାଦାନର ଏକ ମୂଲ୍ୟବାନ ପ୍ରକାଣ୍ଡ ଆଗାର, ପୁଣି ବିରାଟ ଲୋକ ସାହିତ୍ୟ । ପାଞ୍ଚଶ ବର୍ଷ ତଳର ପ୍ରାଚୀନ ସାହିତ୍ୟ ହେଲେ ମଧ୍ୟ ତାହା ଅସାମାନ୍ୟ ଶୈଳୀ ପ୍ରତିଭାର ଉଜ୍ଜ୍ୱଳତା ନେଇ ଚିରଦିନ ପାଇଁ ଓଡ଼ିଆ ସଂସ୍କୃତି ତଥା ସାହିତ୍ୟ ରାଜ୍ୟରେ ଅମର ଆଲୋକ ବିତରଣ କରୁଥିବ । ଓଡ଼ିଆ ଜାତି, ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟର ଯଦି କିଛି ମୂଲ୍ୟବାନ ନିଜସ୍ୱ ସମ୍ପତ୍ତି ଥାଏ ତାହା ହେଉଛି ସେହି ସାରଳା ସାହିତ୍ୟ ।

ଆଜି ଆମେ ଶାରଳାଦାସଙ୍କୁ ସ୍ମରଣ କରିବା ମୂଳରେ କି ତାତ୍ପର୍ଯ୍ୟ ଅଛି ? ଆଜିକି ପାଞ୍ଚଶହ ବର୍ଷ ହେଲା ଜାତିର କୋଟି କୋଟି କଣ୍ଠରେ ସେ ପୂଜିତ ହୋଇ ଆସୁଅଛନ୍ତି । ଏ ଜାତି ଓ ତାହାର ଭାଷା ଓ ସାହିତ୍ୟ ଥିବା ପର୍ଯ୍ୟନ୍ତ ଆଗାମୀ ଯୁଗ ଯୁଗ ପାଇଁ ସେ ନିତ୍ୟ ସ୍ମରିତ ଓ ପୂଜିତ ହେଉଥିବେ । ସେ ଯେତେବେଳେ ଏ ଜାତିର ଶିକ୍ଷକ, କୋଟି କୋଟି ମୁଖରେ ସେ ଭାଷା ଦେଇ ଯାଇ ଅଛନ୍ତି ପରୋକ୍ଷ ଭାବରେ ସେତ ପ୍ରତ୍ୟହ ପୂଜିତ ହେଉ


Digitized by srujan ka@gmail.com

ଅଛନ୍ତି । ତାଙ୍କ ପ୍ରତିଭାର ମୂଲ୍ୟ ଅଦ୍ୟାପି ଏ ଓଡ଼ିଆ ଜାତି ଜାଣିବାକୁ ଷମ ହୋଇନାହିଁ । ବିଶିଷ୍ଟ ସାହିତ୍ୟ ଅନୁଷ୍ଠାନର ସାହାଯ୍ୟ ତଥା ସରକାରଙ୍କର ସାହାଯ୍ୟରେ ସାରଳା ସାହିତ୍ୟର ଗବେଷଣା ଦ୍ୱାରରେ ଆଜି ଯଦି ସାରଳାଙ୍କ କୃତୀ ସମୂହର ଏକ ଉତ୍କୃଷ୍ଟ ସଂସ୍କରଣ ଦେବନାଗରୀ ଅକ୍ଷରରେ ଛପାଯାଇ ପାରନ୍ତା ତାହାହେଲେ ଓଡ଼ିଆ ସାହିତ୍ୟର ମହତ୍ତ୍ୱ ଓଡ଼ିଶା ଛଡ଼ା ଦେଶ ବିଦେଶରେ ପ୍ରସାରଲାଭ କରନ୍ତା । ଏଥିରେ ସନ୍ଦେହର ଅବକାଶ ନାହିଁ । ଏହା ମଧ୍ୟ ଅନ୍ୟ ଏକ କଥା ଯେ ସାରଳା ସାହିତ୍ୟର ଶୁଦ୍ଧ ସଂସ୍କରଣ ନ ହେବା ପର୍ଯ୍ୟନ୍ତ ଓଡ଼ିଆ ଭାଷାର ଇତିହାସ ତଥା ଭାଷାତତ୍ତ୍ୱ ଆଲୋଚନା ଅପୂର୍ଣ୍ଣ ହୋଇ ରହିଥିବ ।

ହଜାର ବର୍ଷର ସୁଦୀର୍ଘ ଓଡ଼ିଆ ସାହିତ୍ୟର ପଥରେ ସାରଳା ପ୍ରଥମ ଏବଂ ପ୍ରଧାନ ଆଲୋକ ସ୍ତମ୍ଭ । ସାରଳା ସାହିତ୍ୟ ପରି ଅତି ଜନିତ ଓ ଜୀବନ୍ତ ସାହିତ୍ୟ ଭାରତୀୟ ସାହିତ୍ୟରେ ନାହିଁ ଏକଥା ସ୍ପଷ୍ଟ ଭାବରେ କହୁହେଉଛି । ମୋର ମନେ ହେଉଛି ଓଡ଼ିଆ ସାହିତ୍ୟରେ ଅନ୍ୟାନ୍ୟ ଅନେକ କବିଙ୍କ ସାହିତ୍ୟ ପ୍ରାଚୀନତା ଓ ମଳିନତା ଲାଭ କରିପାରେ କିନ୍ତୁ ସାରଳା ସାହିତ୍ୟ ଚିରଦିନ ଅମର ଓ ଅମ୍ଲାନ ହୋଇଥିବ । ତାହାର ଭାଷା, ତାହାର କବିତ୍ୱ ଉପକଥା, ଉପାଖ୍ୟାନ ଓ କିମ୍ବଦନ୍ତୀ ପ୍ରଭୃତି ଏ ଜାତିର ଅସ୍ଥି ମଜ୍ଜାଗତ ହୋଇଯାଇଛି । ତାଙ୍କୁ ସ୍ମରଣ କରିବା ତାଙ୍କୁ ପୂଜା କରିବା ଆମର ଅତ୍ୟଧିକ ସାହିତ୍ୟ ପ୍ରେମିକତାର ପରିଚୟ ଦେଇ ଥାଏ ସିନା କିନ୍ତୁ ସେ ଯୋଗଜନ୍ମା, ଯୁଗସ୍ରଷ୍ଟା, ଭାଷା ଓ ସାହିତ୍ୟର ସ୍ରଷ୍ଟା । ପ୍ରତି ମୁହୂର୍ତ୍ତରେ କୋଟି କୋଟି ଲୋକଙ୍କଦ୍ୱାରା ପୂଜିତ ହେଉଅଛନ୍ତି । ସାରଳା ସାହିତ୍ୟ ଓଡ଼ିଆ ସାହିତ୍ୟର "ଅଦ୍ୱିତୀୟ

ଅଷସ୍ୱ ନିତ୍ୟପଦାର୍ଥ" ତାହାର ବିନାଶ ନାହିଁ । ଏ ଜାତିର କର୍ତ୍ତବ୍ୟ ସେହି ବରିଷ୍ଠ ପ୍ରତିଭା-ମଣି ଖଣ୍ଡର ଉଜ୍ଜ୍ୱଳତାକୁ ବିଶେଷ ଭାବରେ ଦୀପ୍ତିମନ୍ତ କରିବାକୁ ଚେଷ୍ଟା କରନ୍ତୁ, ସେହିଥିରେହିଁ ପ୍ରତିଭା ପୂଜାର ମହତ୍ତ୍ୱ ପୁଣି ଜାତି, ଦେଶ ବା ଭାଷାକୁ ଭଲ ପାଇବାର ଉଦ୍ଦେଶ୍ୟ ପ୍ରତିଫଳିତ ହେବ ।

---

## ସୁଧାଚନ୍ଦ୍ର
## ବାନାମ୍ବର ଅଗ୍ରଣୀ



ଶୂଦ୍ରମୁନି ସାରଳାଦାସ ସ୍ୱରଚିତ କଳ୍ପନାମଞ୍ଜୁଳ ମହାଭାରତ ଗ୍ରନ୍ଥ ରଚନା କରି ଲୋକପ୍ରିୟ ହୋଇ ଥିଲେ । ତାଙ୍କର ଓଜସ୍ୱୀ ଭାଷା ଓ ଚତୁରକଳ୍ପନା ସରଳପ୍ରାଣ ଓଡ଼ିଆ ଜାତିର କେବଳ ଅବସର ବିନୋଦନର ଅପୂର୍ବ ସାମଗ୍ରୀ ନୁହେଁ, ପରନ୍ତୁ ତତ୍କାଳୀନ ନୀତି, ଧର୍ମ ଓ ଲୋକଚରିତ୍ର, ସମାଜଶୃଙ୍ଖଳା, ରାଜନୀତି ପ୍ରଭୃତିର ଅମ୍ଳାନ ପ୍ରତୀକ ରୂପେ ଏବେ ମଧ୍ୟ ବିରାଜିତ । ଦୁର୍ଭାଗ୍ୟର କଥା ଯେ, ଆମ୍ଭେମାନେ ତାହାକୁ ଯଥାଯଥ ଭାବେ ହୃଦୟଙ୍ଗମ କରିବାକୁ ଏପର୍ଯ୍ୟନ୍ତ ଯତ୍ନବାନ ହୋଇନାହୁଁ । ତାହାର ତଥ୍ୟକୁ ପ୍ରଥମଥର ପାଇଁ ଯଥାଶକ୍ତି ଗୁଣାଗୁଣ ବିଚାର ସହିତ ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି—ପଣ୍ଡିତ ରତ୍ନ ଗୋପୀନାଥ ନନ୍ଦଶର୍ମା । ତାଙ୍କର ଶ୍ରୀ ଭାରତ ଦର୍ପଣ ଗ୍ରନ୍ଥଟି ସାରଳା ଦାସଙ୍କୁ ଚିହ୍ନିବା ଓ ଚିହ୍ନାଇବାପାଇଁ ଏବେ ସୁଦ୍ଧା ଅଦ୍ୱିତୀୟ ସାଧନ ହୋଇ ରହିଛି । ସାରଳା ଦାସ ମହାଭାରତ ଲେଖିଅଛନ୍ତି, କିନ୍ତୁ ବ୍ୟାସଙ୍କ ଲେଖାକୁ ଅନୁବାଦ କରିନାହାନ୍ତି । ସେ ବହୁସ୍ଥଳରେ ନିଜ କଳ୍ପିତ ବା ଅନ୍ୟ ପୁରାଣରେ ଉକ୍ତ ବିଷୟମାନ ବିସ୍ତୃତ-ଭାବେ ଲେଖିଅଛନ୍ତି । ଏହା ନନ୍ଦ ମହୋଦୟ ଭାରତ ଦର୍ପଣ ଗ୍ରନ୍ଥରେ ଯଥା ସ୍ଥାନରେ ପ୍ରଦର୍ଶାଇ ଅଛନ୍ତି । ଅନ୍ତୁବ ମଧ୍ୟ କେତେକ ଉପାଖ୍ୟାନକୁ ବଙ୍ଗଳା କାଶୀ ରାମଦାସଙ୍କ ମହାଭାରତର ସେହି ସେହି ଉପାଖ୍ୟାନ ସଙ୍ଗେ ତୁଳନା କରିଅଛନ୍ତି ।

କେତେକ ସ୍ଥଳରେ ନନ୍ଦେ ଅପଣେ [ମୂଳରେ ନ ଥିବା କେଉଁ ଉପାଖ୍ୟାନ କେଉଁ ପୁରାଣରୁ ଅବିକଳଭାବେ ବା ପ୍ରତିବିମ୍ବରୂପେ ସାରଳା ମହାଭାରତରେ ସ୍ଥାନ ପାଇଛି, ତାହା ଖୋଜି ବାହାର କରି ଦେଖାଇ ନାହାନ୍ତି । ସେଗୁଡ଼ିକୁ ବାଛି ପୃଥକ୍ ନ କରିବା-ଯାଏ ସାରଳା ଦାସଙ୍କ କଳ୍ପନାବୈଶିଷ୍ଟ୍ୟ ସମ୍ବନ୍ଧେ ସମ୍ୟକ୍ ଧାରଣା ଉପୁଜିବା ଅସମ୍ଭବ । ସାରଳା ଦାସଙ୍କ ଲେଖିବାରେ ଏହା ମଧ୍ୟ ଗୋଟିଏ ଅସାଧାରଣ ସାଧନ । ଏହି ଦୃଷ୍ଟିରୁ ଏଠାରେ 'ଲଖବିନ୍ଧା' ପ୍ରକରଣର ଆଲୋଚନା କରାଯାଉଛି । ଏହା ଅତି-ମନୋହର ଓ ଲୋକପ୍ରିୟ ଉପାଖ୍ୟାନ ।

ମୂଳ ମହାଭାରତରେ ଅଛି—

ସୋଽନ୍ୱେଷମାଣଃ କୌନ୍ତେୟଂ ପାଞ୍ଚାଲ୍ୟୋ ଜନମେଜୟ,
ଦୃଢ଼ଂ ଧନୁରନାନମ୍ୟଂ କାରୟାସ ଭାରତ ।
ଯନ୍ତ୍ରଂ ବୈହାୟସଂ ଚାପି କାରୟାମାସ କୃତ୍ରିମମ୍
ତେନ ଯନ୍ତ୍ରେଣ ସମିତଂ ରାଜା ଲକ୍ଷ୍ୟଂ ଚକାର ସଃ ।

ଅର୍ଥାତ୍—ପାଞ୍ଚାଳର ରାଜା ଦ୍ରୁପଦ ଅର୍ଜୁନଙ୍କ ସନ୍ଧାନ ପାଇବା ଉଦ୍ଦେଶ୍ୟରେ ନୁଆଁଇ ନ ହେବା ଭଳି ଗୋଟିଏ ଟାଣ ଧନୁ ତିଆରି କରାଇଲେ । ଆହୁରି ମଧ୍ୟ ଆକାଶରେ ଗୋଟିଏ କୃତ୍ରିମ ଯନ୍ତ୍ର ସ୍ଥାପନ କଲେ । ସେହି (ଚକ୍ରପରି ଭ୍ରମଣଶୀଳ) ଯନ୍ତ୍ରର ଛିଦ୍ରବାଟେ ଦେଖାଯିବାଭଳି ସ୍ଥାନରେ ଲକ୍ଷ୍ୟ ପଦାର୍ଥଟିକୁ ରଖିଲେ ।

ତପୂରେ ଦ୍ରୁପଦ କହିଲେ ଯେ, ଏହି ଧନୁରେ ଗୁଣ ଚଢ଼ାଇ ଏହି ବାଣମାନଙ୍କଦ୍ୱାରା ଲକ୍ଷ୍ୟ ଫୁଟାଇ ପାରିବ ସେ ମୋର କନ୍ୟାକୁ ପାଇବ ।

କଳ୍ପନାଚତୁର ସାରଳା ଦାସ ଲେଖିଲେ—

ସୁଧାଚକ୍ର ବୋଲିଣ ସେ ସହସ୍ରେକ ଧାର
ଅନୁବ୍ରତେ ବୁଲେ ବୃସଳଚକ୍ର ଅକାର ।
ତହିଁପରେ ବସାଇଲେ ନେଇ ଏକ ମତ୍ସ୍ୟ
ତଳେ ଧନୁ ଏକ ପକାଇଲେ ନବ ଲକ୍ଷ ।
ତାଳେ ଉତ୍ସର୍ଗ ସୁବର୍ଣ୍ଣପଠା ଏକ କଣ୍ଟା
ତହିଁ ତଳେ ରଖାଇଲେ ତୀର୍ଥଜଳ ଗୋଟା ।

ପୁନଶ୍ଚ

ସୁଧାଚକ୍ର ବୁଲଇ ସେ ସହସ୍ରେକ ଧାର
କନକ ମତ୍ସ୍ୟ ଅଛଇ ତହିଁର ଉପର ।
ବୃସଳଚକ୍ର ପ୍ରାଏ ବୁଲଇ ଅନୁବ୍ରତେ
ତଳେ ଧନୁ ଏ ଅଛି ଲକ୍ଷବଳ ଯୁକତେ ।
ଲକ୍ଷେ ବଳ ଧନୁ ଧରି ସେ ପଠାରେ ଉଠି
ତହିଁ ତଳେ ଅଛି ତୀର୍ଥଜଳ ଘଟ ଗୋଟି ।
ତହିଁ ଦୃଷ୍ଟି ଦେଇ ଉପରକୁ କରି ମୁଷ୍ଟି
ଚକ୍ରଭେଦ ମତ୍ସ୍ୟ ବାମଚକ୍ଷୁ ଯିବ ଫୁଟି ।
ଏହେନେକ ସ୍ୱରୂପେ ଯେତ୍ତୁ ଲଖି ବିନ୍ଧିବ
ଏ ମୋହର ଦୁହିତା ଦ୍ରୌପଦୀଙ୍କୁ ବିଭା ହେବ ।

ମୂଳ ମହାଭାରତ ଓ ସାରଳା ମହାଭାରତର ବର୍ଣ୍ଣନା ପାଠ କଲେ ଜଣାଯାଏ ଯେ, ବ୍ୟାସ ଯାହା ସୂତ୍ରାକାରରେ ଲେଖିଥିଲେ, ଟୀକାକାର ନୀଳକଣ୍ଠ ତାହାକୁ ଟିକିଏ ବିସ୍ତୃତ କରି ଲେଖିଅଛନ୍ତି । ପୁଣି ସାରଳା ତାହାକୁ ଅଧିକ ବିଶଦ ଓ ବିସ୍ତାରିତ କରି ଲେଖି-ଅଛନ୍ତି । କିନ୍ତୁ ମୂଳରେ ବା ନୀଳକଣ୍ଠଙ୍କ ଟୀକାରେ 'ସୁଧାଚକ୍ର

ଶବ୍ଦର ପ୍ରୟୋଗ ଦେଖାଯାଏ ନାହିଁ । ନୀଳକଣ୍ଠ 'ଯନ୍ତ୍ର' ଶବ୍ଦର ଅର୍ଥ ଏହିରୂପେ ଦେଇଅଛନ୍ତି—

ବୈହାୟସଂ ଅନ୍ତରୀକ୍ଷଗତଂ ଯନ୍ତ୍ରଂ,

ତୀବ୍ରବେଗବଦ୍ଧ୍ୟାଭ୍ରମଣେନ

ଲକ୍ଷ୍ୟମାର୍ଗ ସଂରୋଚକମନ୍ତ୍ରଗର୍ଭକମ୍ ।"

ଏଥିରେ ମଧ୍ୟ ତୀବ୍ର ବେଗରେ ବୁଲୁଥିବା କଥା ଉକ୍ତ ହୋଇଥିଲେହେଁ 'ରାଧା' ଶବ୍ଦ ବା 'ଚକ୍ର' ଶବ୍ଦର ଉଲ୍ଲେଖ ନାହିଁ । ସାରଳା 'ରାଧା' ଶବ୍ଦର ଯେଉଁ ପ୍ରୟୋଗ କରିଅଛନ୍ତି ତାହା ସେହି ସମୟରେ ଲୋକ ମୁଖରେ ପ୍ରଚଳିତ କିମ୍ବଦନ୍ତୀରୁ ଅଥବା ଅନ୍ୟ ପୁରାଣରୁ ଗ୍ରହଣ କରିଥିବେ ବୋଲି ମନେ କରିବା ସ୍ୱାଭାବିକ । ଲୋକମୁଖରେ ପ୍ରଚଳିତ କିମ୍ବଦନ୍ତୀ ମଧ୍ୟ କୌଣସି ସଂସ୍କୃତ ପୁରାଣରୁ ଗୃହୀତ ହୋଇଥିବ । କାରଣ, 'ରାଧା' ଶବ୍ଦର ଅର୍ଥ ହୈମକୋଷରେ 'ଲକ୍ଷ୍ୟବିଶେଷ' ବୋଲି ଲେଖା ହୋଇଛି ।

× × ରାଧା ବିଦ୍ୟୁତ୍‌ବିଶାଖୟୋଃ

ବିଷ୍ଣୁକାନ୍ତାମଲକ୍ୟୋଶ୍ଚ ଗୋପୀ ବେଧ୍ୟବିଶେଷୟୋଃ

ଇତି ହୈମଃ ।

ଏବେ ଜୈନ ହରିବଂଶରେ ଥିବା ଦ୍ରୌପଦୀ ସ୍ୱୟମ୍ବର ବର୍ଣ୍ଣନା ସଙ୍ଗେ ଏହାର ସାମ୍ୟ ବୈଷମ୍ୟ ବିଚାର କରାଯାଉ । ଜୈନ ହରିବଂଶ ଅଷ୍ଟମ ଶତାବ୍ଦୀରେ କର୍ଣ୍ଣାଟ ଦେଶରେ ସଂସ୍କୃତ ଭାଷାରେ ଲିଖିତ ହୋଇଛି । ଏଥିରେ ଅଛି—

ଚଣ୍ଡ ଗାଣ୍ଡୀବକୋଦଣ୍ଡମଣ୍ଡଳୀକରଣେ କ୍ଷମଃ,

ରାଧାବେଧସମର୍ଥୋ ଯୋ ଦ୍ରୌପଦ୍ୟାଃ ସ ଭବେତ୍ ପତିଃ ।

ଅର୍ଥାତ୍—ଏହି ଦୃଢ଼ ଧନୁରେ ଗୁଣ ଚଢ଼ାଇ ଯେ [ରାଧାବେଧ]

ଲକ୍ଷ୍ୟଭେଦ କରିପାରିବ ସେ ଦ୍ରୌପଦୀଙ୍କୁ ବିଭା ହେବ (ଗାଣ୍ଡୀବ ଗ୍ରନ୍ଥି ଯୁକ୍ତ ଅସ୍ତ୍ରର ମଧ୍ୟ—

ଦାକ୍ଷିଣ୍ୟଭଙ୍ଗଭୀତେନ ଦ୍ରୁପଦେନ ତତୋନୃପାଃ
ବବ୍ରେ ଚନ୍ଦ୍ରକ ଭେଦାର୍ଥ ମାହୂତାଃ କନ୍ୟକାର୍ଥିନଃ ।

ଅର୍ଥାତ୍—ଦ୍ରୁପଦରାଜା ନିଜର ପକ୍ଷପାତିତା ପରିହାର ଉଦ୍ଦେଶ୍ୟରେ ଚନ୍ଦ୍ରକଭେଦ [ଶୃଦ୍ଦମାର୍] ପାଇଁ କନ୍ୟା ପ୍ରାର୍ଥୀ ସମସ୍ତ ରାଜାଙ୍କୁ ଡକାଇଲେ ।

ଏଥିରୁ ଜଣାଯାଉଛି ଯେ ଯେଉଁ ଚନ୍ଦ୍ରାକାର ବସ୍ତୁକୁ ବିଦ୍ଧ କରିବାର କଥା ତାହାହିଁ 'ରାଧା' ଶବ୍ଦ ଦ୍ୱାରା ଉକ୍ତ ହୋଇଛି । କିନ୍ତୁ ସାରଳାଦାସ ବ୍ୟାସୋକ୍ତ ଯନ୍ତ୍ରକୁ 'ରାଧାଚକ୍ର' ନାମରେ ଅଭିହିତ କରିଅଛନ୍ତି । ବ୍ୟାସ 'ଯନ୍ତ୍ର' ଓ 'ଲକ୍ଷ୍ୟ' ପୃଥକରୂପେ ପ୍ରୟୋଗ କରିଅଛନ୍ତି । ଜୈନ ହରିବଂଶର ବର୍ଣ୍ଣନାରେ ଆକାଶରେ କୌଣସି 'ଯନ୍ତ୍ର' ବା ସ୍ୱୟଂଚଳ ଚକ୍ରର ଅବସ୍ଥିତ ଥିବା ଦୃଷ୍ଟ ହୁଏନାହିଁ । ପରନ୍ତୁ ଲକ୍ଷ ବିଦ୍ଧିବା ଲୋକ ଯନ୍ତ୍ର ଉପରେ ଠିଆ ହୋଇ ଲକ୍ଷ ବିନ୍ଧିବାର ବ୍ୟବସ୍ଥା ଥିଲା ବୋଲି ସେଥିରେ ଉକ୍ତ ହୋଇଛି । ଯଥା—

ଭ୍ରମଚକ୍ରସମାରୂଢ଼ୋ ବାଣଂ ସନ୍ଧୃତ୍ୟ ଦକ୍ଷିଣଃ
ଲକ୍ଷ୍ୟଂ ଚନ୍ଦ୍ରକବେଧାଖ୍ୟଂ ବିବ୍ୟାଧ ନୃପସନ୍ନିଧୌ ।

ଅର୍ଥାତ୍—(ଅର୍ଜୁନ) ବୁଲୁଥିବା ଚକ୍ର ଉପରେ ଚଢ଼ି ଶର ଧରି ଚନ୍ଦ୍ରକବେଧ ନାମକ ଲକ୍ଷକୁ ବିନ୍ଧିଲେ ।

ପୂର୍ବୋକ୍ତ ତିନିଗୋଟି ଯାକ ଗ୍ରନ୍ଥର ବର୍ଣ୍ଣନା ପଢ଼ିଲା ପରେ ଧାରଣା ଜନ୍ମେ ଯେପରି କି ସାରଳା, ବ୍ୟାସଙ୍କ ମହାଭାରତ ଓ

ଜୈନ ହରିବଂଶର କଥାବସ୍ତୁକୁ ଏକାଠି କରି ନିଜ କଳ୍ପନାନୁସାରେ ମଧ୍ୟମ ପ୍ରକାରର ବର୍ଣ୍ଣନାଟିଏ ନିଜ ଗ୍ରନ୍ଥରେ ଦେଇଅଛନ୍ତି । ଆମେ ଦେଖିଛୁଁ—ବ୍ୟାସଙ୍କ ବର୍ଣ୍ଣନାରେ ଅର୍ଜ୍ଜୁନ ତଳେ ଠିଆ ହୋଇ ଲକ୍ଷ୍ୟ ବିନ୍ଧିଥିଲେ । ଜୈନ ହରିବଂଶ ଅନୁସାରେ ସେ ବୁଲୁଥିବା ଚକ୍ର ଉପରେ ଚଢ଼ି ସ୍ଥିର ଲକ୍ଷ୍ୟକୁ ବିନ୍ଧିଥିଲେ । କିନ୍ତୁ ସାରଳା ଲେଖିଲେ—

ରାଧାଚକ୍ର ବୁଲୁଅଛି ସାତତାଳ ଉଚେ
ତାଳେ ଉଇରେ ପଟାଏ ଅଛି ଯେ ସୁସଚେ
ଲକ୍ଷ୍ୟ ବଳ ଧନୁ ଧରି ସେ ପଟାରେ ଉଠି

\+ \+ \+

ସାରଳାଙ୍କ ବର୍ଣ୍ଣନାରେ ଚକ୍ର ଉହାଡ଼ରେ ଉପର ଭାଗରେ ଲକ୍ଷ୍ୟ ଅଛି । ତଳେ ପଟା ଉପରେ ଠିଆ ହୋଇ ଅର୍ଜ୍ଜୁନ ଲକ୍ଷ୍ୟ ବିନ୍ଧିଲେ । ସାରଳାଙ୍କ ପଟା ଜୈନ ହରିବଂଶର ଭ୍ରମଚକ୍ର । ଏଥିରୁ ବୋଧହୁଏ ମନେ ହୁଏ—ସାରଳା "ରାଧା" ଶବ୍ଦଟିକୁ ଜୈନ ହରିବଂଶୀୟ ଆଖ୍ୟାନଭାଗ ଅବଲମ୍ବନରେ ତତ୍କାଳରେ ପ୍ରଚଳିତ କିମ୍ବଦନ୍ତୀରୁ ଗ୍ରହଣ କରିଅଛନ୍ତି । ଅନ୍ୟଥା ସେ ଯଦି ନିଜେ ଅଭିଧାନ ପଢ଼ି ରାଧା ଶବ୍ଦର ପ୍ରୟୋଗ କରିଥାନ୍ତେ, ତେବେ ତାକୁ 'ଚକ୍ର' ଶବ୍ଦର ପୂର୍ବରେ ନ ବସାଇ 'ଲକ୍ଷ୍ୟ' ଅର୍ଥରେହିଁ ପ୍ରୟୋଗ କରିଥାନ୍ତେ । ସାରଳା ଦାସ ଦେବୀଙ୍କ ଅନୁଗ୍ରହ ଓ ଶୁଣିବା କିମ୍ବଦନ୍ତୀକୁ ମୂଳ କରି ପୁରାଣ ରଚନା କରିଥିବା କଥା ଲୋକପ୍ରସିଦ୍ଧ । ତାଙ୍କର ଉକ୍ତି ମଧ୍ୟ ଏହାକୁ ସମର୍ଥିତ କରୁଅଛି ଯଥା—

କଳିକାଳ ଦ୍ରୁପଦ ସୁତ କଣ୍ଠାଳକ
ତା ଦର୍ପ ଧ୍ୱଂସିବେ ଜଗନ୍ନାଥ ଅଜ୍ଞ ଦେଲେ ।
ନ ପଢ଼ି ପଣ୍ଡିତ ମୁହିଁ ଅଜ୍ଞା ପରମାଣେ
ଗ୍ରନ୍ଥର ଅର୍ଥ କହିଲେ ସାରଳା ପ୍ରସନ୍ନେ ।
ସେ ଯାହା କହଇ ମୁହିଁ ଲିହଇ ସେ ମତ
ମୂର୍ଖ ହୋଇ ଲେଖଇ ମୁଁ ନୁହଇ ପଣ୍ଡିତ ।

ପୃ ୩୧୩ଷ୍ଠା, ଅଦି ପର୍ବ ଇତ୍ୟାଦି ।
ଗର୍ବେଟ ସଂସ୍କରଣ ।

ଏହା ଅବଶ୍ୟ ଅହଙ୍କାର ପରିତ୍ୟାଗ ବା ବିନୟ । ସାରଳାଙ୍କ ରଚନାକୁ ପଢ଼ିଥିବା ଲୋକ କେବେହେଲେ ତାଙ୍କୁ ଏପରି ସର୍ବତୋଭାବେ ପରାଙ୍ଗପୁଷ୍ଟ ବୋଲି କହିପାରିବ ନାହିଁ । ସେ ଯେ ଜଣେ ଉଚ୍ଚକୋଟିର ବୁଦ୍ଧିମାନ୍, ପ୍ରତିଭାବାନ୍ ମନସ୍ୱୀ ସାରସ୍ୱତ ମାର୍ଗର ପଥିକ ଥିଲେ ତାଙ୍କର ରଚନା ଗୁଡ଼ିକହିଁ ତାହାର ପ୍ରମାଣ । ଅଭିଧାନିକ ସଂସ୍କୃତ ପଦକୁ ପ୍ରୟୋଗ କରି ପାରିବା ଭଳି କ୍ଷମତା ଯେ ସେ ଅର୍ଜ୍ଜି ନ ଥିଲେ ତାହା ମଧ୍ୟ ନୁହେଁ । ପରମ୍ପରାରେ ଲୋକ ମୁଖରେ ପ୍ରଚଳିତ କିମ୍ବଦନ୍ତୀ ଉପରେ ଅଧିକ ଆସ୍ଥା ରଖି ରଚନାରେ ପ୍ରବୃତ୍ତ ହୋଇଥିବାରୁ ଏ ପ୍ରକାର ଭ୍ରମ ଘଟିଅଛି । କେବଳ ଏତିକି ନୁହେଁ । ଆମ ପୁରାଣ ସାହିତ୍ୟରେ ଏପରି ଅନେକ ଉପାଖ୍ୟାନ ଅଛି, ଯାହାର ମୂଳରୂପ ବ୍ୟାସୋକ୍ତ ରୂପେ ପରିଚିତ ପୁରାଣମାନଙ୍କରେ ମିଳେ ନାହିଁ । ଏହାର ଗୋଟିଏ ଉଦାହରଣ ହେଉଛି—କାଳୀୟଦଳନ । ବ୍ୟାସଙ୍କ ହରିବଂଶ, ବ୍ରହ୍ମ-ବୈବର୍ତ୍ତ ପୁରାଣ, ଭାଗବତ ପ୍ରଭୃତି କୃଷ୍ଣଲୀଳା ପ୍ରଧାନ ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଛି ଯେ—କୃଷ୍ଣ ସ୍ୱଚ୍ଛନ୍ଦଭ୍ରମଣର

ବଶବର୍ତ୍ତୀ ହୋଇ କାଳନ୍ଦୀହ୍ରଦରେ ପ୍ରବେଶ କଲା ଉଲ୍ଟରୁ କାଳୀୟ ତାଙ୍କୁ ଦଂଶନ କଲା ଓ ସେ ତାହାକୁ ଦଳିତ ମଥିତ କରିଦେଲେ । କିନ୍ତୁ ଆମ ଦେଶର ଲୋକସାହିତ୍ୟଠାରୁ କାବ୍ୟ ସାହିତ୍ୟ ଯାଏ ସବୁଥିରେ ଏହା ଅନ୍ୟରୂପେ ବର୍ଣ୍ଣିତ ହୋଇଛି । ସାପୁଆ କେଳାଙ୍କ ପଦ୍ମତୋଳା ସମସ୍ତେ ଶୁଣିଥିବେ । ସେମାନେ ବୋଲନ୍ତି—

"କଂସର ଘରଣୀ ପଦ୍ମାବତୀ ରାଣୀ କରୁଛି ଧନାଦୀ ଓଷା ।
ଶଏ ଭାରପଦ୍ମ ଦେବୁରେ କହ୍ନାଇ ନ ଥିବ ପାଖୁଡ଼ା ମିଶା ।"

ପୁଣି ଦୀନକୃଷ୍ଣ ରସକଲ୍ଲୋଳରେ ଲେଖିଲେ—

କୁଞ୍ଜବିହାରୀ କରନ୍ତେ ଏମନ୍ତେ ବିହାର ।
କଂସ ଆଜ୍ଞା ଆସି ଲାଗିଲା ନନ୍ଦକୁ ଦେବୁ କମଳ ଶତେ ଭାର ।

ଏଥିରୁ ଜଣାଗଲା ଯେ, କଂସ ଶହେ ଭାର ଯୋଗାଇବା ପାଇଁ ନନ୍ଦଙ୍କୁ ଆଦେଶ ଦେବାରୁ ପିତାଙ୍କୁ କଂସ ଦାଉରୁ ରକ୍ଷା କରିବା ପାଇଁ କୃଷ୍ଣ କର୍ତ୍ତବ୍ୟାନୁରୋଧରେ କାଳନ୍ଦୀହ୍ରଦରେ ପ୍ରବେଶ କରିଥିଲେ । ଜୈନ ହରିବଂଶରେ ରସକଲ୍ଲୋଳ ଓ ପଦ୍ମତୋଳାର ଅନୁରୂପ ବର୍ଣ୍ଣନା ଅଛି । ଯଥା—

ବିଦିତ-ହରିସମୀହସ୍ତାପି କଂସସ୍ତଦାନୀମ୍
ପୁନରପି ତଦପାୟେ ପାପଧୀର୍ଗୋପବର୍ଗମ୍ ।
କମଳହରଣ ହେତୋର୍କ୍କୁର୍ମ୍ମେତ୍ୟଙ୍ଗଭୀଜାମ୍
ହ୍ରଦମପି ବିଷମାହି ଗ୍ରାହଣୋଦ୍ୟାମୁନଂ ସଃ ।

ଅର୍ଥାତ୍—କୃଷ୍ଣଙ୍କର ସମସ୍ତପ୍ରକାର କାର୍ଯ୍ୟକଳାପ ଜାଣିଲା ପରେ କଂସ ତାଙ୍କ ବିନାଶ ପାଇଁ ଅଦ୍ଭୁତ ଗୋଟିଏ ଉପାୟ ସ୍ଥିର

କଲ । ସେ ଗୋପାଳମାନଙ୍କୁ ଯମୁନା ମଧ୍ୟସ୍ଥ ହ୍ରଦକୁ (କାଳନ୍ଦୀ-ହ୍ରଦକୁ) ପଦ୍ମଫୁଲ ଅଣିବା ପାଇଁ ପଠାଇଲ । ସେ ହ୍ରଦ ସର୍ପର ନିବାସ ହେତୁ ଭୀଷଣ ଓ ପ୍ରାଣୀମାନଙ୍କର ଅଗମ୍ୟ ଥିଲ ।

ଜୈ: ହରିବଂଶ । ଅ ୩୬ ।

ଏଥିରୁ ଅନୁମାନ ହେବା ଅତି ସ୍ୱାଭାବିକ ଯେ ପୂର୍ବେ ଆମ ଦେଶରେ ଲୋକପରମ୍ପରାରେ ଜୈନପୁରାଣରେ ଦୃଷ୍ଟ ଆଖ୍ୟାନମାନ କଥିତ ତଥା ଶ୍ରୁତ ହେଉଥିଲ । ଏଣୁ ପୁରାଣ ସାହିତ୍ୟର ଆଲୋଚନାବେଳେ ଜୈନପୁରାଣମାନଙ୍କର (ବିଶେଷତଃ ଆଦି-ପୁରାଣ, ପଦ୍ମପୁରାଣ ଓ ହରିବଂଶ ପୁରାଣର) ଆଲୋଚନା ଅପରିହାର୍ଯ୍ୟ । ତାହା ନ ହେଲେ ଆମ୍ଭେମାନେ ଆମ୍ଭମାନଙ୍କର ସାହିତ୍ୟ ବା ସଂସ୍କୃତିର ମୂଳକୁ ଅଭ୍ରାନ୍ତ ଭାବେ ନିର୍ଣ୍ଣୟ କରି ପାରିବୁ ନାହିଁ ।

---

# ଆଦିକବି ଓ ଆଦ୍ୟ ସମୀକ୍ଷକ

## ଶ୍ରୀ ଗୌରୀକୁମାର ବ୍ରହ୍ମା

ଅଦ୍ୟାବଧି ଆମର ହସ୍ତଗତ ହୋଇଥିବା କାବ୍ୟକବିତା-ମାନଙ୍କ ମଧ୍ୟରୁ ଐତିହାସିକ କାଳ ବିଗ୍ଭରରେ କେଉଁଟି ସର୍ବ ପ୍ରଥମ, ତାହା ନିରୂପଣ କରିବା ସହଜ ସାଧ୍ୟ ହୋଇନାହିଁ। ଓଡ଼ିଆ ମହାଭାରତ ଲେଖକ ସାରଳା ଦାସଙ୍କ ପ୍ରାଚୀନତା ବର୍ତ୍ତମାନ ଅନୁମାନର ବିଷୟ ନୁହେ—ତାହା ବହୁ-ପ୍ରମାଣ-ପ୍ରତିଷ୍ଠିତ ଐତିହାସିକ ସିଦ୍ଧାନ୍ତରେ ପରିଣତ ହୋଇ ଯାଇଛି। ଖ୍ରୀ:୧୮୭୨-ରେ ହଣ୍ଟର ସାହେବ ସ୍ୱୀୟ ଓଡ଼ିଶାର ଇତିହାସରେ, ସେହି ସମୟର ପ୍ରାୟ ତିନିଶତ ବର୍ଷ ପୂର୍ବବର୍ତ୍ତୀ କବି ରୂପେ ସାରଳାଙ୍କୁ ପ୍ରତିପାଦନ କରିଥିଲେ। କିନ୍ତୁ ସ୍ୱର୍ଗତ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଓ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଯୁକ୍ତିପୂର୍ଣ୍ଣ ବିଗ୍ଭରରେ କବିଙ୍କର କାଳ ଗତ ସନ୍ଦେହ ଭଞ୍ଜନ ହୋଇଯାଇଛି। ଉତ୍କଳର ସ୍ୱନାମଧନ୍ୟ ନରପତି କପିଳେନ୍ଦ୍ର ଦେବଙ୍କର ସମସାମୟିକ କବି ରୂପେ ସାରଳା ଦାସ ପରିଗୃହୀତ ହୋଇଅଛନ୍ତି। "ଆଦି କବି" ରୂପେ ଗବେଷକମାନେ ତାଙ୍କୁ ଗ୍ରହଣ କରିଥାଇ ଥିବାରୁ ଏଠାରେ ପ୍ରଶ୍ନ ଉଦିତ ହେବା ସ୍ୱାଭାବିକ ଯେ, କପିଳେନ୍ଦ୍ର ଦେବଙ୍କ ପୂର୍ବରୁ କ'ଣ ଓଡ଼ିଆ ସାହିତ୍ୟ ବିକଶିତ ହୋଇ ନ ଥିଲା ଓ ତାଙ୍କର ସମ-ସାମୟିକ ସାରଳା ଦାସଙ୍କ ପୂର୍ବେ କ'ଣ କୌଣସି ବାଣୀ-ସାଧକ

ନିଜର ବିମଳ ବାଗ୍‌ବିଳାସରେ ଉତ୍କଳ ଭାରତୀଙ୍କର ଆରାଧନା କରି ନ ଥିଲେ ?

ଆଦିକବି କାହାଁକି ?—ଏ ପ୍ରଶ୍ନର ଉତ୍ତର ଯେତେ ସହଜପରି ପ୍ରତୀତ ହୁଏ, ତାହାର ସମାଧାନ ତଦପେକ୍ଷା ଶତ ଗୁଣରେ ଜଟିଳ । ଓଡ଼ିଶାର ବରେଣ୍ୟ ଆଲୋଚକମାନଙ୍କ ମଧ୍ୟରେ ପଣ୍ଡିତ ଗୋପୀନାଥ ନନ୍ଦ, ପଣ୍ଡିତ ବିନାୟକ ମିଶ୍ର ଓ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ନାମ ଉଲ୍ଲେଖ ଯୋଗ୍ୟ—ଅନ୍ତତଃ ଆଦିକବିଙ୍କ ଆଲୋଚନା ସମ୍ପର୍କରେ । ଏହି ତିନିଜଣ ଯଥାକ୍ରମେ ସାରଳା ଦାସ, ମାର୍କଣ୍ଡ ଦାସ ଓ ବଚ୍ଛା ଦାସଙ୍କୁ ଲବ୍ଧ କାବ୍ୟ କବିତା ମଧ୍ୟରୁ ପ୍ରାଚୀନତମ ରଚନାର କବିରୂପେ ଗ୍ରହଣ କରି ଅଛନ୍ତି । ପଣ୍ଡିତ ଗୋପୀନାଥ ନନ୍ଦଙ୍କର ସିଦ୍ଧାନ୍ତ ଓ ଯୁକ୍ତି ପରମ୍ପରା ଅନ୍ୟତ୍ର ଏ ପ୍ରବନ୍ଧର କଳେବର ମଣ୍ଡନକରି ଅଛି । ପଣ୍ଡିତ ମିଶ୍ରଙ୍କର ମତ ଗ୍ରାହ୍ୟ ନୁହେ । କାରଣ ସେ ସ୍ୱୟଂ କବି ମାର୍କଣ୍ଡ ଦାସଙ୍କୁ ଷୋଡ଼ଶ ଶତାବ୍ଦୀରେ ଅବସ୍ଥାପିତ କରି ସ୍ୱୀୟ ସିଦ୍ଧାନ୍ତକୁ ହିଁ ଖଣ୍ଡନ କରି ଅଛନ୍ତି । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ସାରଳା ମହାଭାରତରେ କଳସା ଶବ୍ଦ ଦେଖି, ସେହି କଳସା ଶବ୍ଦ ବଚ୍ଛା ଦାସଙ୍କର କଳସା ଚଉତିଶାକୁ ହିଁ ବୁଝାଉଛି ବୋଲି କହି ଅଛନ୍ତି । ଏହି ସମ୍ପର୍କରେ ଏ ମଧ୍ୟରେ ବିସ୍ତୃତ ଆଲୋଚନା ହୋଇ ଯାଇଛି । ସାରଳା ଦାସଙ୍କ ପୂର୍ବରୁ ଯଦି 'କଳସା' ଶବ୍ଦ ନ ଥାନ୍ତା, ତାହାହେଲେ ହୁଏତ ଓଡ଼ିଆ ମହାଭାରତର କଳସା ଶବ୍ଦ କେବଳ କଳସା ଚଉତିଶାକୁ ବୁଝାଉଛି ବୋଲି ଗୃହୀତ ହୋଇ ପାରନ୍ତା । ଅଧ୍ୟାପକ ବଂଶୀଧର ମହାନ୍ତି ଝଙ୍କାରରେ ସୁଦୀର୍ଘ ପ୍ରବନ୍ଧ ପ୍ରକାଶ କରି ସ୍ପଷ୍ଟ ପ୍ରତିପାଦନ କରିଛନ୍ତି ଯେ, (୦ର୍ଥ ବର୍ଷ ପୃ ୭୨୯) କଳସା ଶବ୍ଦ ସାରଳାଙ୍କର ବହୁପୂର୍ବରୁ

ପ୍ରଚଳିତ ଥିଲା । ଏପରିକି ଦ୍ୱାଦଶ ଶତାବ୍ଦୀର ସାଧକ ଗୋରଖ ନାଥଙ୍କର "କଳସା" ଭଜନର ଦୃଷ୍ଟାନ୍ତ ମଧ୍ୟ ସେ ଉପସ୍ଥାପନ କରିଛନ୍ତି । ସୁତରାଂ 'କଳସା' ଦ୍ୱାରା ବଚ୍ଛା ଦାସଙ୍କ ଚଉତିଶାହିଁ ଗୃହୀତ ହେବାର କାରଣ ନାହିଁ । ଭାଷାର ପ୍ରାଚୀନ ରୂପ ଦୃଷ୍ଟିରୁ ମଧ୍ୟ "କଳସା ଚଉତିଶାକୁ ସାରଳାଙ୍କର ପୂର୍ବବର୍ତ୍ତୀ ବୋଲି କୁହା ଯାଇ ପାରିବ ନାହିଁ । ଅବଶ୍ୟ ଭାଷା ଏକମାତ୍ର କାଳ ନିର୍ଦ୍ଧେଶର ଉପାଦାନ ନୁହେଁ । ତଥାପି କଳସା ଚଉତିଶାରେ ଅଳ୍ପ କେତେ-ଗୋଟି ସ୍ୱଳ୍ପ ଦୁର୍ବୋଧ୍ୟ ଶବ୍ଦର ଦୃଷ୍ଟାନ୍ତ ଉପସ୍ଥାପନ କରି ଯେଉଁ-ମାନେ ତାହାକୁ ସାରଳାଙ୍କ ପୂର୍ବବର୍ତ୍ତୀ ଯୁଗରେ ଅବସ୍ଥାପିତ କରିବାକୁ ଚାହାନ୍ତି, ସେମାନଙ୍କୁ ପଣ୍ଡିତ ଗୋପୀନାଥ ନନ୍ଦଙ୍କ, "ଶ୍ରୀ ଭାରତ ଦର୍ପଣ"ର ୨୮୭ ପୃଷ୍ଠା ଉପରେ ଥରେ ଦୃକ୍‌ପାତ କରିବାକୁ ଅନୁରୋଧ କରାଯାଇ ପାରେ । ସାରଳା ମହାଭାରତ ରୂପକ ସାରସ୍ୱତ ମହାସାଗରର ମନ୍ଥନରେ ମନ୍ଦରରୂପୀ ଗୋପୀନାଥ ନନ୍ଦ ମହୋଦୟ ମଧ୍ୟ ସାରଳାଙ୍କ ପ୍ରଯୁକ୍ତ ବହୁ ଶବ୍ଦର ଅର୍ଥ ଅବଗତ ହେବାକୁ ଅସମର୍ଥ ହୋଇ ଅଛନ୍ତି । ସୁତରାଂ 'କଳସା' ଶବ୍ଦର ପ୍ରାଚୀନ ବ୍ୟବହାର ଦୃଷ୍ଟିରେ ଏବଂ ସାରଳା ମହାଭାରତର ଭାଷାଗତ ଅତି ପ୍ରାଚୀନତା ବିଚାରରେ, ପ୍ରମାଣ ମିଳିବା ପର୍ଯ୍ୟନ୍ତ, ସାରଳା ଦାସଙ୍କୁ ହିଁ ପ୍ରାଚୀନ ତମ କବିରୂପେ ଗ୍ରହଣ କରାଯିବା ବିଧେୟ ।

**ନନ୍ଦ ମହୋଦୟଙ୍କର ଯୁକ୍ତି** :—ପଣ୍ଡିତ ଗୋପୀ-ନାଥ ନନ୍ଦ ସାରଳା ଦାସଙ୍କୁ ଆଦି କବି ରୂପେ ଗ୍ରହଣ କରିବା ସପକ୍ଷରେ ଯେଉଁ ଯୁକ୍ତି ଉପସ୍ଥାପନ କରିଅଛନ୍ତି, ତାହା ସର୍ବଥା ପ୍ରଣିଧାନର ବିଷୟ । କଳସା ଚଉତିଶାକୁ ଅଦ୍ୟାବଧି ପ୍ରାପ୍ତ ଓଡ଼ିଆ କାବ୍ୟ କବିତା ମଧ୍ୟରୁ ପ୍ରଥମ କବିତା ରୂପେ ଗ୍ରହଣ ନ କରିବାର

ଅର୍ଥ ନୁହେଁ ଯେ, ସାରଳାଙ୍କ ପୂର୍ବରୁ ଅନ୍ୟ କେହି କବି ନିଜ ନିଜ ରଚନାକୁ ଲିପିବଦ୍ଧ କରି ନ ଥିଲେ । ଏପରି କହିବାର ଏକମାତ୍ର ଅର୍ଥ ହେଉଛି—ଏପର୍ଯ୍ୟନ୍ତ ମିଳିଥିବା ରଚନାମାନଙ୍କ ମଧ୍ୟରୁ, ଐତିହାସିକ ତଥ୍ୟ ନିରୂପଣ ପ୍ରଣାଳୀରେ, କୌଣସି ରଚନାକୁ ସାରଳାଙ୍କ ପୂର୍ବବର୍ତ୍ତୀ ରୂପେ ପ୍ରମାଣ କରାଯାଇ ପାରୁ-ନାହିଁ । କୌଣସି ଗବେଷକ ଅକାଟ୍ୟ ଯୁକ୍ତି ବଳରେ ସାରଳାଙ୍କ ପୂର୍ବ ଯୁଗର ବୋଲି କୌଣସି ରଚନାକୁ ପ୍ରମାଣିତ କରିବା ପର୍ଯ୍ୟନ୍ତ ସାରଳା ମହାଭାରତକୁ ହିଁ ପ୍ରାଚୀନତମ ରୂପେ ଗ୍ରହଣ କରାଯାଉଥିବ ।

ନନ୍ଦ ମହାଶୟଙ୍କ ମତରେ—"ଶ୍ରୀମାନ୍ ସାରଳା ଦାସ ମହାଶୟ ଓଡ଼ିଆର ସର୍ବ ପ୍ରଥମ ଉତ୍କଳ ଗ୍ରନ୍ଥ କର୍ତ୍ତା ବା ମହା କବି ଥିଲେ । ଏହାଙ୍କ ପୂର୍ବେ କେହି ଏତାଦୃଶ କବି ଥିବାର ବିଶ୍ୱାସ ହୁଏ ନାହିଁ । ମାର୍କଣ୍ଡ ଦାସ ପ୍ରଭୃତି ଏହାଙ୍କର ପୂର୍ବବର୍ତ୍ତୀ ଥିଲେ ସୁଦ୍ଧା ସେମାନଙ୍କୁ ମହା କବି କୁହାଯାଇ ନ ପାରେ । କାରଣ, ସେମାନେ ମୁଷ୍ଟିମେୟ କେତେକ ପଦ୍ୟମାତ୍ର ଲେଖି ଯାଇ ଅଛନ୍ତି । ଆମ୍ଭମାନଙ୍କ ସାହିତ୍ୟରେ ସାରଳା ମହାଭାରତ କେବଳ ଅାଦ୍ୟ ଓ ଅତି ପ୍ରାଚୀନ ଗ୍ରନ୍ଥ ।" (ଶ୍ରୀଭାରତ ଦର୍ପଣ ପୃଷ୍ଠା—୩୩୧ରୁ ୩୩୨) ସେ ପୁଣି ଅନ୍ୟତ୍ର ଲେଖିଛନ୍ତି—"ଏହି ପ୍ରକାଣ୍ଡ ମହାଭାରତ ଗ୍ରନ୍ଥରେ କବି ମହୋଦୟ ନିଜର ପରମାରାଧ୍ୟ ଦେବତା ସ୍ୱରୂପ ଅର୍ଦ୍ଧକର୍ତ୍ତ୍ୱୀ ପନ୍ନ ମାତୃଭାଷାକୁ ପରିପୁଷ୍ଟାଙ୍ଗ ଓ ସମାପ୍ତ-ସୌନ୍ଦର୍ଯ୍ୟ କରିବାପାଇଁ ତାଦୃଶ କୌଣସି ପୁସ୍ତକାଦର ଅାଶ୍ରୟ କିମ୍ବା ସାହାଯ୍ୟ ମଧ୍ୟ ପାଇ ପାରି ନଥିଲେ । × × × ଓଡ଼ିଆ ଭାଷାର ଜାତୀୟ ଅଳଙ୍କାର ନୂତନର ପ୍ରଧାନ ସୃଷ୍ଟିକର୍ତ୍ତା ସାରଳା ଦାସ କବି କେବଳ, ଏହା କହିବା ଅତ୍ୟୁକ୍ତି ନୁହେଁ; କାରଣ ଏହାଙ୍କ ପୂର୍ବରୁ

ଓଡ଼ିଆ ଭାଷାର ପ୍ରକୃତ ଗଦ୍ୟ ରୂପରେ ନ ଥିଲା, ଏହା କହିଲେ ଚଳେ । ଯାହା କିଛି ଥିବ, ତାହା ଅତି ସାମାନ୍ୟ ଓ ଅତି ଗ୍ରମିକ । ଏହାଙ୍କ ପୂର୍ବେ କେଶବ କୋଇଲି ଗୋପୀ ଭାଷା ପ୍ରଭୃତି କେତେକ ଅତି କ୍ଷୁଦ୍ର ପୁସ୍ତକ ଛଡ଼ା ଅନ୍ୟ କିଛି ଥିବାର କେହି ଜାଣନ୍ତି ନାହିଁ । ଅତଏବ କହନ୍ତି, ସାରଳା ଦାସେ କେବଳ ଓଡ଼ିଆ ଗଦ୍ୟର ପ୍ରାଥମିକ ପ୍ରବର୍ତ୍ତକ । ( ପୃଷ୍ଠା—୨୬୪—୨୬୫ )

ଏ ମତର ପରୀକ୍ଷାଃ—ପଣ୍ଡିତ ନନ୍ଦ ମହୋଦୟଙ୍କର ଏ ମତ ପ୍ରକାଶ ପରେ ଏହା ସ୍ପଷ୍ଟ ପ୍ରମାଣିତ ହୋଇଅଛି ଯେ, ମାର୍କଣ୍ଡ ଦାସଙ୍କ କେଶବ କୋଇଲି ଏବଂ ଦନେଇ ଦାସଙ୍କ ଗୋପୀ ଭାଷା ସାରଳାଙ୍କଠାରୁ ପ୍ରାଚୀନ ନୁହେ । ସେ ଯାହା ହେଉ, ଅମର ଅଜ୍ଞାତରେ ସାରଳାଙ୍କ ପୂର୍ବରୁ କେତେକ କ୍ଷୁଦ୍ର ରଚନା ଅବଶ୍ୟ ଥିଲା ବୋଲି ଧରିଗଲେ ମଧ୍ୟ ନନ୍ଦ ମହୋଦୟଙ୍କର ଯୁକ୍ତି ତଦ୍ୱାରା ବ୍ୟାହତ ହେଉନାହିଁ । ସଂସ୍କୃତ ସାହିତ୍ୟରେ ବାଲ୍ମୀକିଙ୍କୁ 'ଆଦିକବି' ଉପାଧିରେ ଭୂଷିତ କରାଯାଇଥାଏ । ରାମାୟଣ ଉତ୍ପତ୍ତିର ପୌରାଣିକ ବିବରଣୀ ଯାହା ହେଉ ପଛେ, ଏହା ସ୍ୱତଃସିଦ୍ଧ କଥା ଯେ, ଯେଉଁ ସମୟରେ ଓ ଯେଉଁ ଭାଷାରେ ରାମାୟଣ ରୂପୀ ପ୍ରକାଣ୍ଡ ଭାରତୀ-ମନ୍ଦିର ନିର୍ମିତ ହୋଇ ପାରିଥିଲା ସେହି ସମୟର ପୂର୍ବରୁ ସେହି ଭାଷାରେ ଅନେକ କ୍ଷୁଦ୍ର ରଚନା ଅବଶ୍ୟ ଥିବ । କିନ୍ତୁ ସୂର୍ଯ୍ୟ ଉଦିତ ହେଲେ ତାରାଗଣ ଯେପରି ନିଷ୍ପ୍ରଭ ହୋଇଯାଆନ୍ତି, ବାଲ୍ମୀକି ରାମାୟଣର ରଚନା ପରେ ସେ ସମସ୍ତ ଅତ୍ୟନ୍ତ ନଗଣ୍ୟ ରୂପେ ବିବେଚିତ ହୋଇ ପାଠକ ମଣ୍ଡଳୀର ସ୍ମୃତି କୋଷରୁ କ୍ରମେ ବହିଷ୍କୃତ ହୋଇଯାଇଅଛନ୍ତି । ଠିକ୍ ସେହିପରି, ସାରଳା ଦାସ ଅଷ୍ଟାଦଶ ପର୍ବ ବ୍ୟାପୀ ଓଡ଼ିଆ ମହାଭାରତ ରଚନା କରି, ହୁଏତ 'ଆଦିକବି' ରୂପେ ଅମର ପ୍ରତିଷ୍ଠା

କରିବାକୁ ସମର୍ଥ ହୋଇଅଛନ୍ତି । କେଉଁ ତାହାମାନଙ୍କୁ ସେ ନିଷ୍ପ୍ରଭ କରି ଦେଇଥିଲେ, ହୁଏତ ଦୂର ଭବିଷ୍ୟତରେ ତାହା ପରିଜ୍ଞାତ ହେବ ।

"ଶିଳ୍ପ ଚନ୍ଦ୍ରିକା"ର ପ୍ରାଚୀନତାः—ଏ ମଧ୍ୟରେ ପୁରୀ ପ୍ରତିଷ୍ଠିତ ନିଖିଳ ଉତ୍କଳ ଗବେଷଣା କାର୍ଯ୍ୟା- ଳୟ ପକ୍ଷରୁ 'ଶିଳ୍ପ ଚନ୍ଦ୍ରିକା' ନାମକ ଖଣ୍ଡିଏ ପଦ୍ୟ ପୁସ୍ତକ ପ୍ରକାଶ ପାଇଛି । ଏହାର ମୁଖବନ୍ଧରେ ଅଧ୍ୟାପକ କୁଞ୍ଜବିହାରୀ ଦାସ ଲେଖିଛନ୍ତି—"ଶିଳ୍ପ ଚନ୍ଦ୍ରିକା ଅନଙ୍ଗଭୀମ ଦେବଙ୍କ ସମୟରେ ରଚିତ; ସ୍ୱୟଂ ଲେଖକ ମନ୍ଦିରର ଜଣେ ଶିଳ୍ପୀ ଥିଲେ । "(ପୃଷ୍ଠା ୮) । ମନେ ହୁଏ, ମୁଖବନ୍ଧ ଲେଖକ ମହୋଦୟ ପୁସ୍ତକ ପ୍ରଦତ୍ତ କବିଙ୍କ ଆତ୍ମ-ପରିଚୟକୁ କେବଳ ଗଦ୍ୟ ଆକାରରେ ଲିପିବଦ୍ଧ କରିଛନ୍ତି—କିନ୍ତୁ ତାହାର ଯୌକ୍ତିକତା ପ୍ରତି ଦୃଷ୍ଟିପାତ କରିନାହାନ୍ତି । ଉତ୍କଳର ଐତିହାସିକମାନେ ଏ ସମ୍ପର୍କରେ ସମଧିକ ଆଲୋକପାତ କରି- ପାରନ୍ତି । ତଥାପି ଏକଥା ନିର୍ଭୀକଭାବରେ କୁହାଯାଇପାରିବ ଯେ, ଶିଳ୍ପଚନ୍ଦ୍ରିକାର ଭାଷା ଅତ୍ୟନ୍ତ ଅର୍ବାଚୀନ । ଭାଷା ଏକମାତ୍ର ବିଚାର୍ଯ୍ୟ ବିଷୟ ନୁହେଁ; ଏହା ସ୍ୱୀକାର୍ଯ୍ୟ । କିନ୍ତୁ ପ୍ରାୟ ୫୦ ବର୍ଷ ମଧ୍ୟରେ ରଚିତ କବିତାକୁ ଷୋଡ଼ଶ ଶତାବ୍ଦୀର ଅଚ୍ୟୁତାନନ୍ଦଙ୍କ ନାମରେ ଭଣିତ କରି ପ୍ରକାଶ କଲେ ଯେ କେହି ପାଠକ ତାହାର ଅର୍ବାଚୀନତା ହୃଦୟଙ୍ଗମ କରିବ—ଅବଶ୍ୟ ସେଥିପାଇଁ ଓଡ଼ିଆ ଭାଷାର ବିକାଶମୂଳକ ଐତିହାସିକ ଧାରଣା ପାଠକ ପକ୍ଷରେ ଆବଶ୍ୟକ ।

ତେବେ ବୌଦ୍ଧଗାନ ଓ ଦୋହାର ସ୍ଥାନ କେଉଁଠି ?—ବୌଦ୍ଧଗାନ ଓ ଦୋହା ଅନ୍ତର୍ଗତ କାହ୍ନୁପା,

ଲୁଇପା ପ୍ରମୁଖ ସିଦ୍ଧ ପୁରୁଷଙ୍କର ତତ୍ତ୍ୱପୂର୍ଣ୍ଣ ରଚନା ସମୂହ ସମସାମୟିକ ଓଡ଼ିଆ ଭାଷାର ପ୍ରତୀକ । ସାରଳା ଦାସଙ୍କର ପ୍ରାୟ ଛ ଶତ ବର୍ଷ ପୂର୍ବେ ସେ ସମସ୍ତ ରଚିତ ହୋଇଥିବା ଅନୁମିତ ହୁଏ । ସୁତରାଂ ସାରଳା ଦାସଙ୍କୁ ଆଦିକବି ଆଖ୍ୟା ପ୍ରଦାନ କରିବାରେ ଲକ୍ଷ୍ୟର ସ୍ପଷ୍ଟୀକରଣ ଆବଶ୍ୟକ । ସ୍ଥୂଳଭାବରେ ଓଡ଼ିଆ ଭାଷାର ବିକାଶ ନିର୍ଦ୍ଦେଶ ପ୍ରସଙ୍ଗରେ ଦୁଇଟି ନିର୍ଦ୍ଦିଷ୍ଟ ସ୍ତର ଲକ୍ଷିତ ହୋଇଥାଏ । ପ୍ରଥମଟିର ପ୍ରତୀକ ରୂପେ କାହ୍ନୁପା ପ୍ରଭୃତିଙ୍କର ରଚନାକୁ ଏବଂ ଦ୍ୱିତୀୟଟିର ନିଦର୍ଶନ ରୂପେ ସାରଳା ବଳରାମ, ଭଞ୍ଜ ଓ କବିସୂର୍ଯ୍ୟ ପ୍ରଭୃତିଙ୍କର ଗ୍ରନ୍ଥାବଳୀକୁ ଗ୍ରହଣ କରାଯାଇପାରେ । ଭାଷାଗତ ବିକାଶରେ, ଦ୍ୱିତୀୟ ସ୍ତରର ପରିଜ୍ଞାତ ରଚନାମାନଙ୍କ ମଧ୍ୟରେ ପ୍ରଥମ କିମ୍ବା ପ୍ରାଚୀନତମ ବୋଲି ସାରଳାଦାସଙ୍କୁହିଁ ଗ୍ରହଣ କରାଯିବା ବିଧେୟ । ଏହି ଦୃଷ୍ଟିରୁ ହିଁ ଯେଉଁ ପଣ୍ଡିତ ମିଶ୍ର ମହୋଦୟ ନିଜର 'ଓଡ଼ିଆ ଭାଷାର ଇତିହାସ'ରେ ବୌଦ୍ଧଗାନ ଓ ଦୋହାର କେତେକ ରଚନାର ଓଡ଼ିଆତ୍ୱ ପ୍ରମାଣ କରିଛନ୍ତି, ସେ ନିଜ ଓଡ଼ିଆ ସାହିତ୍ୟର ଇତିହାସରେ ଲେଖିଛନ୍ତି—"ମୋ ମତରେ ମାର୍କଣ୍ଡ ଦାସଙ୍କ କେଶବ କୋଇଲି ପ୍ରାଚୀନତମ" ରଚନା ।

**ଆଦ୍ୟ ସମୀକ୍ଷକ**—ପୂର୍ବରୁ କେତେକ କ୍ଷୁଦ୍ର ରଚନା ଥିବା ସମ୍ଭବ ବୋଲି ଧରାଯାଇ ମଧ୍ୟ ଯେଉଁ ଦୃଷ୍ଟିରୁ ସାରଳାଙ୍କୁ ଆଦିକବି ରୂପେ ଗ୍ରହଣ କରାଯାଇଛି, ସେହି ଦୃଷ୍ଟିରୁ ପଣ୍ଡିତ ଗୋପୀନାଥଙ୍କୁ ଆଦ୍ୟ ସମୀକ୍ଷକ କହିବା ବୋଧହୁଏ ଅଯୌକ୍ତିକ ହେବନାହିଁ । ତାଙ୍କ ପୂର୍ବରୁ କୌଣସି ଓଡ଼ିଆ ଗ୍ରନ୍ଥର ଏପରି ପାଣ୍ଡିତ୍ୟପୂର୍ଣ୍ଣ ଓ ମୌଳିକତା-ମଣ୍ଡିତ ସମାଲୋଚନା ଓଡ଼ିଆ ସାହିତ୍ୟରେ ଦେଖାଦେଇ ନଥିଲା । ପଣ୍ଡିତ ଗୋପୀନାଥ ନନ୍ଦଙ୍କର

ଜାଣ୍ଣୁ ଉତ୍କଳରେ ହୋଇ ନଥିଲେ—କିମ୍ବା "ଶ୍ରୀ ଭାରତ ଦର୍ପଣ"ର ଲେଖକ ନନ୍ଦଙ୍କୁ ଉତ୍କଳ ଜନନୀ ପ୍ରସବ କରିନଥିଲେ ଆଜି ସୁଦ୍ଧା ସାରଳା ଦାସଙ୍କର ଅନନ୍ୟ ସାଧାରଣ କବି ପ୍ରତିଭା ଓ କାବ୍ୟ ବିରଚନା ପାଟବ ସ୍ପଷ୍ଟ ରୂପେ ଉପଲବ୍ଧି ଓ ଉପଭୋଗ କରିବା ପାଇଁ ଉତ୍କଳର ଶିକ୍ଷିତ ସମ୍ପ୍ରଦାୟ ମଧ୍ୟ ସମର୍ଥ ହୋଇ ନଥାନ୍ତା । ଭାରତର ସୁପଣ୍ଡିତ ସି. ଭି. ବୈଦ୍ୟ ସଂସ୍କୃତ ମହାଭାରତର ଯେଉଁ ଉପାଦେୟ ସମାଲୋଚନା ପ୍ରକାଶ କରିଛନ୍ତି, ତାହା ତୁଳନାରେ ନନ୍ଦଙ୍କର ଆଲୋଚନା ଆଦୌ ନିମ୍ନ ସ୍ତରର ନୁହେଁ । ବରଂ କେତେକ ସ୍ଥଳରେ ସେ ତାଙ୍କୁ ଟପି ଯାଇଛନ୍ତି ବୋଲି ନିଃସନ୍ଦେହରେ କୁହାଯାଇ ପାରିବ । ସତ୍ୟବାଦୀର ସମ୍ପାଦକ ଯଥାର୍ଥରେ ଲେଖିଥିଲେ (୧ମ ଭାଗ, ସଂଖ୍ୟା ୮-୯) —"ଏହି ଗୁରୁତର ବିଭାଗରେ ଓଡ଼ିଶାରେ ତାଙ୍କୁ ଆଦି ସାଧକ ବୋଲି କହିଲେ ବୋଧହୁଏ କାହାରି ବିଶେଷ ଆପତ୍ତି ରହିବ ନାହିଁ ।" ଏହି ମତକୁ ଅବଲମ୍ବନ କରି ବୈଜ୍ଞାନିକ ସମାଲୋଚନା ପ୍ରିୟ ନବ୍ୟ ପାଠକ ସମାଜରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କୁ ଆଦ୍ୟ ସମୀକ୍ଷକ ମଧ୍ୟ କୁହାଯାଇ ପାରେ ।

ଆଲୋଚନାରେ ବାଧା :—ଏହି ସ୍ୱନାମ ଧନ୍ୟ ସମୀକ୍ଷକ ଯେତେବେଳେ ମାତୃ ସାହିତ୍ୟର ସମୁନ୍ନତି କାମନାରେ ଗଭୀର ଶ୍ରମ ସ୍ୱୀକାର କରି ସାରଳା ମହାଭାରତର ବୈଜ୍ଞାନିକ ଆଲୋଚନାରେ ପ୍ରବୃତ୍ତ ହୋଇଥିଲେ, ସେତେବେଳେ ଦେଶବାସୀଙ୍କଠାରୁ ସେ କୌଣସି ପ୍ରକାରର ଗ୍ରାହକତାର ନିକଷ ରୂପୀ ଅଭିନନ୍ଦନ ଲାଭ କରି ନ ଥିଲେ । ଯେଉଁ "ଶ୍ରୀ ଭାରତ ଦର୍ପଣ" ପାଠ କଲେ ଆଜି କବି ଓ ସମାଲୋଚକ ଉଭୟଙ୍କର ମହତ୍ତ୍ୱ ଉପଲବ୍ଧିରେ ଶରୀର ଉଲ୍ଲସିତ ହୁଏ, ଯେଉଁ ଗ୍ରନ୍ଥ ଖଣ୍ଡିକ ଆଜି

ଜାତୀୟ ସାରସ୍ୱତ ଭଣ୍ଡାରର ମହାର୍ଘ ରତ୍ନ ରୂପେ ବିବେଚିତ ହୋଇଥାଏ, ତାହାର ଜନକ ରୂପେ ସ୍ୱର୍ଗତ ପଣ୍ଡିତ ନନ୍ଦ ମହୋଦୟ ଅନେକଙ୍କର ବିରକ୍ତିଭାଜନ ହୋଇଥିଲେ । ଏଥିରେ ବିସ୍ମିତ କିମ୍ବା ବିଚଳିତ ହେବାର କୌଣସି କାରଣ ନାହିଁ । ପ୍ରତ୍ୟେକ ଦେଶରେ ଓ ପ୍ରତି ଯୁଗରେ କେତେଜଣ ଅଯୋଗ୍ୟ କିମ୍ବା ଅଳ୍ପ ଯୋଗ୍ୟ ବ୍ୟକ୍ତି କୌଣସି ନୂତନ ବସ୍ତୁ ସୃଷ୍ଟିରେ ଅସମର୍ଥ ହୋଇ ଈର୍ଷା ବିଜଡ଼ିତ ମାନସରେ କୌଣସି ନିପୁଣ ଶିଳ୍ପୀର କୃତିତ୍ୱକୁ ଅସାର ଓ ନିଃସାର ରୂପେ ଚିତ୍ରିତ କରି ଥାଆନ୍ତି । ଏ ପ୍ରକାର ଅପଚେଷ୍ଟା ଯେ ସେମାନଙ୍କ ଅପାରଗତାର ଆଚ୍ଛାଦନ ନିମନ୍ତେ ଉଦ୍ଦିଷ୍ଟ ବୁଝାଇବା ଅନାବଶ୍ୟକ । ଗଭୀର ପରିତାପରେ ବିଖ୍ୟାତ ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ ଲେଖିଥିଲେ :—"ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମ୍ମାଙ୍କ ସାରଳା ମହାଭାରତ ସମାଲୋଚନା ଏହି ସଂଖ୍ୟାରେ ଶେଷ ହେଲା । ବୋଧହୁଏ ଅନେକ ପାଠକ ଶାନ୍ତିମନ୍ତ୍ର ଉଚ୍ଚାରଣ କରିବେ । ଏହି ପ୍ରବନ୍ଧ ପାଇଁ କେବଳ ନନ୍ଦ ମହାଶୟ ନୁହନ୍ତି, ଆମ୍ଭେମାନେ ମଧ୍ୟ ଅନେକଙ୍କର ବିରାଗ ଭାଜନ ହୋଇଅଛୁ । ଏହି ସୁଦୀର୍ଘ କାଳ ମଧ୍ୟରେ ଅନେକଙ୍କୁ ଅନେକ ପ୍ରକାର କୈଫିୟତ ଦେବାକୁ ହୋଇ ଅଛି । ବଡ଼ କୌତୁକର କଥା ଏହି ଯେ ବିରୁଦ୍ଧବାଦୀଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ପ୍ରବନ୍ଧଟି ପଢ଼ିବାର ଶ୍ରମ ଓ ସହିଷ୍ଣୁତା ସ୍ୱୀକାର କରି ନାହାନ୍ତି । ଅଥଚ ଠିକ୍ କରି ରଖି ଅଛନ୍ତି ଯେ, ଏହା ଅସାର ଓ ପ୍ରକାଶର ଅଯୋଗ୍ୟ । ଏପରି ତଥ୍ୟପୂର୍ଣ୍ଣ ରଚନା ଉତ୍କଳରେ କେତୋଟି ପ୍ରକାଶିତ ହୋଇଅଛି, ଆମ୍ଭେମାନେ କହି ନ ପାରୁ । × × × କେହି କେହି ଅଜ୍ଞାତ ନାମା, ଲେଖକମ୍ମନ୍ୟ ବ୍ୟକ୍ତି ମୁରବି ସାଜି ସମ୍ବାଦ ପତ୍ର ସାହାଯ୍ୟରେ ଲେଖକଙ୍କ ତଥା

ସମ୍ପାଦକଙ୍କୁ କେତେ ଗୁରୁ ଗମ୍ଭୀର ଉପଦେଶ ଦେଇ ପଚାରିଲେ ଯେ ଅହୋ ଧୃଷ୍ଟତା ଏବଂ ବାଚାଳତା ।" (ଏକୋନବିଂଶ ଭାଗର ଚତୁର୍ଥ ସଂଖ୍ୟା) ଏଥିରୁ ସ୍ପଷ୍ଟ ଜଣାଯାଏ ନନ୍ଦ ମହୋଦୟ ଅସ୍ତ୍ର-ଶସ୍ତ୍ରରେ ଅଖଣ୍ଡ ବିଶ୍ୱାସ ସ୍ଥାପନ କରି ପାଠକମାନଙ୍କର ବିରାଗ ଭାଜନ ହୋଇ ମଧ୍ୟ ସାରଳା ମହାଭାରତର ଏତାଦୃଶ ତତ୍ତ୍ୱପୂର୍ଣ୍ଣ ଆଲୋଚନାରେ ପ୍ରବୃତ୍ତ ହୋଇଥିଲେ ।

**ନନ୍ଦଙ୍କ ଦୃଷ୍ଟିରେ ସାରଳା ଦାସ** :—ପଣ୍ଡିତ ଗୋପୀନାଥ ନନ୍ଦ ସାରଳାଙ୍କୁ ଯେପରି ଭାବରେ ଗ୍ରହଣ କରିଛନ୍ତି, ସେପରି ଗ୍ରାହକତା ଉତ୍କଳର ପାଠକ ସମାଜରେ ବିରଳ ଓ ସଂସ୍କୃତ ପଣ୍ଡିତଙ୍କ ମଧ୍ୟରେ ଏକାନ୍ତ ଦୁଷ୍ପ୍ରାପ୍ୟ । ଏ ଦେଶର ପ୍ରତିଷ୍ଠିତ ଶାସନୀ ପଣ୍ଡିତମାନେ ସଂସ୍କୃତ ସାହିତ୍ୟ ଜଳଧିରେ ଅବଗାହନ କରି ବହୁ ଶ୍ରମ ଲବ୍ଧ "ଓଡ଼ିଆ ଭାଗବତ"କୁ ତେଲି ଭାଗବତ ଆଖ୍ୟା ଦେଇ, ଜଗନ୍ନାଥ ଦାସଙ୍କ ସାଧନାକୁ ପଣ୍ଡ ପରିଶ୍ରମ ରୂପେ ପ୍ରତିପାଦନ କରିବାକୁ ଉଦ୍ୟତ ଥିଲେ । ଜଗନ୍ନାଥଙ୍କ ପୂର୍ବବର୍ତ୍ତୀ ସାରଳା ଦାସ ସେହି ପଣ୍ଡିତ ସମାଜରୁ, ଓଡ଼ିଆ ମହାଭାରତର ପ୍ରଣେତା ରୂପେ ସମ୍ମାନ ଲାଭ କରିବା ଏକ ପ୍ରକାର ଆକାଶ କୁସୁମ ଥିଲା । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ସାରଳା ଚରିତରୁ ଜଣାଯାଏ, ପୁରୀର ପଣ୍ଡିତମାନେ "ଘଣ୍ଟା ବାଉ ଯୁଣ" ପ୍ରଭୃତିର ଅର୍ଥହୀନତା ପ୍ରମାଣ କରି ତାଙ୍କର ଦୋଷ ଦର୍ଶନଜନିତ ଗୌରବ ଖଣ୍ଡନରେ ପ୍ରବୃତ୍ତ ହୋଇଥିଲେ । ପଣ୍ଡିତ ଗୋପୀନାଥ କିନ୍ତୁ ମାତୃସାହିତ୍ୟର ବରେଣ୍ୟ ଉନ୍ନତିକାମୀ ରୂପେ ଲେଖିଛନ୍ତି—"ସାରଳା ଦାସଙ୍କ କବିତାରେ ଆମ୍ଭେମାନେ ବର୍ତ୍ତମାନ ଯେତେ ଯେତେ ଦୋଷ ଦେଖି ପାରୁଅଛୁ, ସେ ସବୁଯାକ କବିଙ୍କର ନୁହେ । × × × । ଏହି ପୁରାଣ ଗ୍ରନ୍ଥଟି ପ୍ରାୟ ପାଞ୍ଚଶତ

ବର୍ଷ ପୂର୍ବେ ଲିଖିତ ହୋଇ ତଦବଧି ମର୍କଟ ହସ୍ତରେ ଶାଳଗ୍ରାମ ତୁଲ୍ୟ, ବିଶେଷତଃ ଅନଭିଜ୍ଞ ଓ ଅବିଦ୍ୟମାନଙ୍କର ହସ୍ତାମଳକ ପ୍ରାପ୍ତ ହୋଇ ଆସିଅଛି × × × । ଆପଣମାନେ ଅବଶ୍ୟ ଜାଣିଥିବେ, × × ×, ଅଦ୍ୟାପି କେତେକ ମାତୃସାହିତ୍ୟରେ ଅନଭିଜ୍ଞ, କେବଳ ସଂସ୍କୃତିଆ, ଶୁଆପାଠିଆ ପଣ୍ଡିତ ଦେଶୀୟ ଭାଷା କବିତାକୁ ଘୃଣା ଚକ୍ଷୁରେ ଦେଖନ୍ତି । ଯଦି ତତ୍ପ୍ରାୟ ସମକକ୍ଷ କୌଣସି ପଣ୍ଡିତଙ୍କୁ ଓଡ଼ିଆ ପୁସ୍ତକ ଖଣ୍ଡିଏ ପଢ଼ୁଥିବାର ଦେଖନ୍ତି, ତେବେ ବିରକ୍ତି ସହ କହନ୍ତି, "ଭାଷା ଗୁଡ଼ାଏ କ'ଣ ପଢ଼ୁଛ ହେ ।" ଏ ସବୁ ସେମାନଙ୍କର ଦୁର୍ମତିତ୍ୱର ପରିଚୟସୂଚକ ।" ଏ ପ୍ରକାର ନିର୍ଭୀକ ମନ୍ତବ୍ୟ ପ୍ରକାଶ ପଣ୍ଡିତ ମହୋଦୟଙ୍କ ବିପୁଳ ପାଣ୍ଡିତ୍ୟ, ଗଭୀର ସାହିତ୍ୟ ପ୍ରେମ ଓ ଗବେଷଣା ଗୁଣ ଗ୍ରାହକତାର ସାକ୍ଷ୍ୟ ପ୍ରଦାନ କରେ । ସାରଳା ଦାସଙ୍କର ମହତ୍ତ୍ୱ ସେ କିପରି ଓ କେଉଁ ପରିମାଣରେ ଉପଲବ୍ଧି କରିଥିଲେ, ତାହା, ସେ ସାରଳାଙ୍କ ବିଶେଷଣ ରୂପେ ପ୍ରୟୋଗ କରିଥିବା କେତୋଟି ଶବ୍ଦରୁ ହିଁ ସୁବିଦିତ ହୁଏ । "ଗଳ୍ପକଳ୍ପ କଳ୍ପତରୁ, ମହାପ୍ରାଜ୍ଞ, ଅବିନଶ୍ୱର ସ୍ମୃତିମାନ୍, ବହୁ ପୌରାଣିକ ଚରିତବେତ୍ତା, ଉତ୍କଳ ବ୍ୟାସ, ପ୍ରୟୋଗ କୁଶଳ, ମତିମାନ୍, ରସଜ୍ଞ", ପ୍ରଭୃତି ବିଶେଷଣରେ ସାରଳାଙ୍କ ପ୍ରତି ନନ୍ଦଙ୍କର ସମ୍ମାନ ସ୍ପଷ୍ଟ ପ୍ରକଟିତ ।

ଶ୍ରୀ ଭାରତଦର୍ପଣର ବିଷୟ କ୍ରମଃ—ନନ୍ଦ ମହୋଦୟ ନିଜର ସୁବିସ୍ତୃତ ଆଲୋଚନାକୁ ଚାରି ଭାଗରେ ବିଭକ୍ତ କରିଅଛନ୍ତି । "(୧) ବିଷୟ ଓ ବୈଷମ୍ୟ, ଅର୍ଥାତ୍ ବିଷୟର ସାଦୃଶ୍ୟ ଓ ବୈଷମ୍ୟ (୨) ଭାଷା ଓ ସାହିତ୍ୟ (୩) କବି ପରିଚୟ (୪) ଉପସଂହାର" । ଶ୍ରୀ ଭାରତ ଦର୍ପଣର ଏକାଦଶ ପୃଷ୍ଠାରୁ ଉପର୍ଯ୍ୟୁକ୍ତ ବିଭାଗମାନଙ୍କର କ୍ରମିକ ଆଲୋଚନା ହୋଇଅଛି ।


Digitized by srujan ka@gmail.com

ଓଡ଼ିଆପୂର୍ବରୁ ମୁଦ୍ରାଯନ୍ତ୍ରର ପ୍ରସାଦରୁ ପ୍ରକାଶ ପାଇଥିବା ସାରଳା ମହାଭାରତର ପାଠାଶୁଦ୍ଧି ଓ ବିକୃତି ସମ୍ପର୍କରେ ସେ ସପ୍ରମାଣ ଚୋଟିଚୋଟି କଥାର ଅବତାରଣା କରିଛନ୍ତି । ସ୍ଥଳ ବିଶେଷରେ ପ୍ରକାଶିତ ପୁସ୍ତକର ଉପାଦେୟତା ସେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । କିନ୍ତୁ ପ୍ରକାଶକ ମଣ୍ଡଳୀର ବିଚାରହୀନତା ଦ୍ୱାରା କବିଙ୍କର ଗୌରବ ବିନଷ୍ଟ ହେଉଥିବା ଉପଲବ୍ଧି କରି, ମୁଦ୍ରିତ ପୁସ୍ତକର ପାଠକମାନଙ୍କୁ ସତର୍କବାଣୀ ଶୁଣାଇ ଦେଇଛନ୍ତି । ସେ ଲେଖିଛନ୍ତି—"ଦଉଁ ଗନ୍ଧ ଗନ୍ଧ ମାଙ୍କଡ଼ ହେଲାପରି କେତେକ ସ୍ଥଳ ହୋଇ ଯାଇଅଛି । ପରିଶୋଧନ ଦ୍ୱାରା ବହୁସ୍ଥଳ କବିଦତ୍ତ ସ୍ୱାଭାବିକ ସୌନ୍ଦର୍ଯ୍ୟରୁ ବଞ୍ଚିତ ହୋଇ ବହୁଦୂରରେ ନିକ୍ଷିପ୍ତ ହୋଇଅଛି × × । ଏହିପରି ବହୁ ସ୍ଥଳରେ ଯାହା ତାଳପତ୍ର ପୁସ୍ତକରେ ନାହିଁ, ଏପରି କେତେକ ଦୋଷରେ ଛାପାର କେତେକ ଅଂଶ ଦୂଷିତ ହୋଇ ଯାଇଅଛି । ପ୍ରଥମତଃ ଅନେକ ଅନଭିଜ୍ଞଙ୍କ ଲେଖାରେ କ୍ରମଶଃ ବହୁସ୍ଥଳରେ ଦୋଷଯୁକ୍ତ ହୋଇ ଆସିଲା, ତାହାପରେ ପୁଣି ଛାପ ହେଉଛି" ( ପୃ ୪-୮ ) । ଅଦ୍ୟାପି ପଣ୍ଡିତ ନନ୍ଦଙ୍କ ନିର୍ଦ୍ଦେଶିତ ଏ ଭ୍ରମସଂଶୋଧନ କାର୍ଯ୍ୟ କୌଣସି ବ୍ୟକ୍ତି ବା ଅନୁଷ୍ଠାନ ପକ୍ଷରୁ ଅବଲମ୍ବିତ ହୋଇ ନ ଥିବା ଗଭୀର ପରିତାପର ବିଷୟ । ଅଜି ସାରଳା ସାହିତ୍ୟ ନାମରେ ଯାହା ଆଲୋଚିତ ହେଉଛି, ତାହା ବାସ୍ତବରେ ସାରଳାଙ୍କ ଲେଖନୀ ନିଃସୃତ କି ନୁହେଁ, ଏହା ସର୍ବପ୍ରଥମେ ବିଚାର୍ଯ୍ୟ । ସୁତରାଂ ଓଡ଼ିଆ ସାହିତ୍ୟରେ ଏହି ଆଦମ ମହାକବିଙ୍କର ପ୍ରକୃଷ୍ଟ ପରିଚୟ, ଗୋଟାଏ ବିଶୁଦ୍ଧ ସଂସ୍କରଣର ପ୍ରକାଶ ପର୍ଯ୍ୟନ୍ତ, ମିଳିବା ସମ୍ଭବ ନୁହେଁ । ଦେଶର ଦୁର୍ଭାଗ୍ୟ ଯେ ବ୍ୟକ୍ତି ବିଶେଷ ଓ କେତେକ ଅନୁଷ୍ଠାନ ନାନାବିଧ ବିଳାସ ବ୍ୟସନରେ ସହସ୍ର ସହସ୍ର ମୁଦ୍ରା ଅକାତରରେ ବ୍ୟୟ

କରୁଛନ୍ତି, କିନ୍ତୁ ତାଙ୍କର ପରମ ସଂପଦ ଓଡ଼ିଆ ମହାଭାରତ'ର ବିଶୁଦ୍ଧ ସଂସ୍କରଣ ପ୍ରକାଶ ଦିଗରେ ଇଦମାନ ଉଦ୍ୟମ କରୁନାହାନ୍ତି ।

**ବିଷୟ ଓ ବୈଷମ୍ୟ:—** ମୂଳ ମହାଭାରତ ସଙ୍ଗେ ଓଡ଼ିଆ ମହାଭାରତର ତୁଳନାତ୍ମକ ବିଗ୍ଚରରେ ପଣ୍ଡିତ ନନ୍ଦ ମହୋଦୟ ଯେଉଁ ପାଣ୍ଡିତ୍ୟ, ପ୍ରତିଭା ଓ ଧୈର୍ଯ୍ୟ ପ୍ରଦର୍ଶନ କରିଛନ୍ତି, ତାହା ଉତ୍କଳରେ ଅତୁଳନୀୟ । ଦୁଃଖର କଥା, ଯେଉଁମାନେ ନନ୍ଦଙ୍କର ଗବେଷଣାକୁ ଏକମାତ୍ର ସମ୍ବଳ କରି ସାରଳାଙ୍କ ସମ୍ପର୍କରେ ବହୁ ପୃଷ୍ଠାବ୍ୟାପୀ ଆଲୋଚନା ନିଜ ନିଜର ଗ୍ରନ୍ଥମାନଙ୍କରେ ସନ୍ନିବେଶିତ କରି ପାଠକ ସମାଜରେ ସ୍ୱୀୟ ଜ୍ଞାନଗାରିମାର ଛାପ୍ୟାପାତ କରିଛନ୍ତି, ସେମାନେ ନନ୍ଦଙ୍କ ପ୍ରତି ଘୋର କୃତଘ୍ନତା ଆଚରଣ କରିଛନ୍ତି; କାରଣ ନନ୍ଦଙ୍କ ମୂଳ ଆଲୋଚନାର ମହନୀୟତା ତାହିଁରେ ସେମାନଙ୍କ ପାଠକଙ୍କୁ ଜଣାଇବାକୁ ଚେଷ୍ଟା କରି ନାହାନ୍ତି । ଉତ୍କଳରେ କେତେଜଣ ମୂଳ ମହାଭାରତକୁ ଆଲୋଚକର ଦୃଷ୍ଟିରେ ଆମୂଳଚୂଳ ପଢ଼ନ୍ତି ବା ପଢ଼ିଛନ୍ତି, କହିହେବ ନାହିଁ । ପୁଣି ପ୍ରତି ସ୍ତରରେ ସାରଳା ମହାଭାରତର ମୂଳ ପୋଥି ସଙ୍ଗେ ମିଳାଇ ସାମ୍ୟ ଓ ବୈଷମ୍ୟ ଲକ୍ଷ୍ୟ କରିବାର ସାଧନା ଯେ ଏକାନ୍ତ ବିରଳ, କହିବା ଅନାବଶ୍ୟକ । ନନ୍ଦ ମହୋଦୟ ଆଲୋଚନାରେ ପ୍ରବୃତ୍ତ ହୋଇ ନ ଥିଲେ ସାରଳାଙ୍କ ପ୍ରତିଭା ଓ ସ୍ୱାତନ୍ତ୍ର୍ୟର ନନ୍ଦନ କାନନ ଯେ ଲୋକଲୋଚନର ଅଦ୍ୟାପି ଗୋଚରୀଭୂତ ହୋଇ ନ ଥାନ୍ତା, ଏହା କହିବା ମଧ୍ୟ ବାହୁଲ୍ୟ ମାତ୍ର । ସେ ସ୍ପଷ୍ଟ କରି କରିବାକୁ ଚାହିଁଥିଲେ ଓ ଚାହାଁଇବାରେ କୃତକାର୍ଯ୍ୟ ମଧ୍ୟ ହୋଇଛନ୍ତି । ବିଷୟ ବା ମହାଭାରତଗତ ଚରିତ୍ରକ୍ରମର ସ୍ୱରୂପ ବ୍ୟକ୍ତ କରିବାକୁ

ଯାଇ ସେ ଲେଖିଛନ୍ତି—"ଏହି କବି ମୂଳଗ୍ରନ୍ଥର ଅନୁବାଦ କରି ନାହାନ୍ତି କିମ୍ବା ଅବିକଳାନୁକରଣରେ ଲେଖି ନାହାନ୍ତି । ମୂଳ ଗ୍ରନ୍ଥର ପ୍ରଗାଢ଼ ଶୁଶ୍ରୂଷାରେ ଏକାନ୍ତ ଅନୁରକ୍ତ ଥାଇ ସମଗ୍ର ଭାରତର ସ୍ଥୂଳ ସ୍ଥୂଳ ବିଷୟ ଓ ଅମୂଳାନ୍ତ ଘଟନାଂଶମାନ ମାତ୍ର ସ୍ୱୀୟ ଅବ୍ୟାହତ ସ୍ମୃତିକୋଷରେ ପ୍ରଦୀପ୍ତ ରଖି ଅସାମାନ୍ୟ କଳ୍ପନା ଶକ୍ତି ଓ ବିଷୟ ସଂବିଧାନ ପ୍ରବୀଣତାର ବଳରେ ବଳୀୟାନ ହୋଇ ଅଳଙ୍କୀକରଣ, ବିସ୍ତୃତୀକରଣ, ଅନୁକ୍ତ ପ୍ରକ୍ଷେପ ଓ ଉକ୍ତ ନିକ୍ଷେପାଦି କ୍ରମରେ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଲେଖିଯାଇ ଅଛନ୍ତି । ଏଥିରେ ଯେ କିଛି ଚରିତର ଅସାମଞ୍ଜସ୍ୟ, ଅସଂଲଗ୍ନତା, ଅସଙ୍ଗତ ପ୍ରଭୃତି ଦୋଷ ନାହିଁ, ତାହା ଅମ୍ଭେମାନେ କହୁ ନାହୁଁ" (ପୃ ୧୧) । ସଂସ୍କୃତ ପଣ୍ଡିତମାନେ ସାରଳାଙ୍କ ସନ୍ଦର୍ଭ ସଙ୍କଳୀକରଣର ସ୍ୱାତନ୍ତ୍ର୍ୟ ହେତୁ ତାଙ୍କୁ ଅନୁବାଦରେ ଅପାରଗ ବୋଲି ପ୍ରତିପାଦନ କରିଥାନ୍ତି । ଏ ପ୍ରକାର ସମାଲୋଚକମାନଙ୍କର ମତ ଖଣ୍ଡନ ଲାଗି ନନ୍ଦ ମହୋଦୟ କବିଙ୍କ ସ୍ୱାଧୀନତାର କାରଣ ମଧ୍ୟ ବ୍ୟାଖ୍ୟାନ କରିବାକୁ ଚେଷ୍ଟା କରିଛନ୍ତି । ସେ ଲେଖିଛନ୍ତି—"ତ୍ରୈକାଳିକ ବୃଦ୍ଧବେଦ, ଲୋକୋତ୍ତର ମତସତ୍ତମ, ପୁରାଣ ଋଷିମାନେ ସତ୍ୟ-ଭୂତ କଳ୍ପନା ଶକ୍ତିଦ୍ୱାରା ସମୁଦ୍ଭାବିତ ପ୍ରସ୍ତାବର ଉଦାହରଣ ସ୍ୱରୂପ ଅନଳୀକ ଚରିତମାନ ଯେପରି ମଧ୍ୟେ ମଧ୍ୟେ ଦେଇଅଛନ୍ତି, ସାରଳା ଦାସ କବି ମଧ୍ୟ ତଦନୁକରଣରେ ବହୁସ୍ଥଳରେ ଅନେକ ବିଷୟର ଉଦ୍ଭାବନ ଏବଂ ମନଗଢ଼ା ଚରିତଗୁଡ଼ିକରେ ପ୍ରସ୍ତାବିତ ବିଷୟମାନଙ୍କର ସମର୍ଥନ କରିଅଛନ୍ତି" (ପୃ ୪୦) । ଅସୀମ ଧୈର୍ଯ୍ୟ ସହକାରେ ସଂସ୍କୃତ ଓ ଓଡ଼ିଆ ମହାଭାରତକୁ ଚିକ୍କଣ କରି ସେ ବିଶ୍ଳେଷଣ କରିଅଛନ୍ତି ଓ ସାରଳାଙ୍କ ଗ୍ରନ୍ଥରେ "ଯାହା ଯାହା ପରିତ୍ୟକ୍ତ, ପ୍ରକ୍ଷିପ୍ତ, ସଂକ୍ଷିପ୍ତ, ଅନ୍ୟାର୍ଥ ନିକ୍ଷିପ୍ତ ଏବଂ ଅଯଥା ବିସ୍ତୃତ ଓ

ଅନ୍ୟଥାକୃତ ହୋଇଅଛି” (ପୃ ୧୧) ସେ ସମସ୍ତର ବିମଳ ବିଗ୍ରହ କରିଅଛନ୍ତି । ଉପରେ ଯେଉଁ ଖଣ୍ଡବାକ୍ୟଟି ଉଦ୍ଧୃତ, ତହିଁରୁ ସାରଳା ମହାଭାରତର ସ୍ୱାତନ୍ତ୍ର୍ୟ, ନୂତନତ୍ୱ ଓ ମୌଳିକତାର ସ୍ୱରୂପ ଓ ପରିମାଣ ଅତ୍ୟନ୍ତ ସ୍ପଷ୍ଟ ହୋଇଅଛି । ତହିଁ ସଙ୍ଗେ ସଙ୍ଗେ ନନ୍ଦଙ୍କ ନିର୍ଦ୍ଧାରିତ ତଥ୍ୟଗୁଡ଼ିକର ପ୍ରକାଶଭଙ୍ଗୀଗତ ଚମତ୍କାରିତା ଓ ସଂଯମଶୀଳତା ମଧ୍ୟ ବ୍ୟକ୍ତ ହେଉଅଛି । ନିରପେକ୍ଷ ସମାଲୋଚକଭାବରେ ସମୁଚିତ ସ୍ଥଳରେ ସେ ଯେପରି କବିଙ୍କର ପ୍ରଶଂସାଗାନରେ ମୁଖର ହୋଇ ଉଠିଛନ୍ତି, ସେହିପରି କେତେକ ସ୍ଥଳରେ ତାଙ୍କର ଦୋଷଦର୍ଶନରୁ ବିରତ ହୋଇ ନାହାନ୍ତି । ଠାଏ ସେ ଲେଖିଛନ୍ତି, “ଯାହାହେଉ ସାରଳା ମହାଭାରତରେ ଯୁଦ୍ଧାରମ୍ଭ ସମୟ ମକର ଶୁକ୍ଳ ଚତୁର୍ଥୀ ବୋଲି ଯାହା ପ୍ରତିପାଦିତ, ତାହା ସମ୍ପୂର୍ଣ୍ଣ ଭ୍ରାନ୍ତ ଓ ନିତାନ୍ତ ବିଗ୍ରହଶୂନ୍ୟ । ଏ ସବୁ ବିଗ୍ରହ କରି ନେଲେ ପାଣ୍ଡବମାନଙ୍କର ଯାବତୀୟ ଘଟନାମୂଳକ ସାମୟିକ ବିବରଣରେ ସାରଳା ଦାସଙ୍କ ଅଭିଜ୍ଞତା ଥିଲା, ଏହା ଅମ୍ଭେ ବିଶ୍ୱାସ କରି ନ ପାରୁଁ । (ପୃ-୧୬୨) । ବିଷୟ ବିଗ୍ରହରେ ନନ୍ଦ ମହୋଦୟ ବଙ୍ଗୀୟ ବିଖ୍ୟାତ ରାମାୟଣର ଉଲ୍ଲେଖ କରି, ସ୍ୱୀୟ ଭୂୟୋଦର୍ଶିତାର ପରିଚୟ ଦେଇଛନ୍ତି । ଯେଉଁ ସ୍ଥଳଗୁଡ଼ିକ ମୂଳ ମହାଭାରତର ଅନନୁରୂପ, ନନ୍ଦେ ସେ ଗୁଡ଼ିକର ମୂଳ ନିର୍ଦ୍ଦେଶ କରିବାକୁ ସର୍ବଦା ଚେଷ୍ଟା କରିନାହାନ୍ତି । କିମ୍ବା ଚେଷ୍ଟା କରି କୃତକାର୍ଯ୍ୟ ହୋଇନାହାନ୍ତି । ନନ୍ଦଙ୍କ ଗ୍ରନ୍ଥପାଠ ବ୍ୟତୀତ ତାଙ୍କ ତୁଳନାତ୍ମକ ଶକ୍ତିର ଉତ୍କର୍ଷ ଉପଲବ୍ଧି କରି ହେବନାହିଁ ।

ଭାଷା ଓ ସାହିତ୍ୟ:—ଏହା ନନ୍ଦଙ୍କର ଦ୍ୱିତୀୟ ଅଲୋଚ୍ୟ ବିଷୟ । ଏ ପରିଚ୍ଛେଦରେ ବ୍ୟାକରଣ ଜ୍ଞାନର ଯେଉଁ ପରିଚୟ ସେ ପ୍ରଦାନ କରିଛନ୍ତି, ତାହା ମଧ୍ୟ ଅନ୍ୟ ଅଲୋଚକ ପକ୍ଷରେ

ଦୁର୍ଲ୍ଲଭ । "ଓଡ଼ିଆ ଭାଷାତତ୍ତ୍ୱ"ର ଲେଖକ ପକ୍ଷରେ ହିଁ ଏ ପ୍ରକାର ଆଲୋଚନା ସମ୍ଭବ । ସେ ଲେଖିଛନ୍ତି—"ସାରଳା ଦାସ କବିଙ୍କ ସମୟରେ ଓଡ଼ିଆ ଭାଷାର ଶାରୀରିକ ଅବସ୍ଥା ଅତି ଶୈଶବ ଭାବାପନ୍ନ ଥିଲା । ସେ ସଙ୍କୀର୍ଣ୍ଣ ଭାଷା ରାଜ୍ୟରେ ସଂସ୍କୃତ ଓ ପ୍ରାକୃତ ଭାଷା-ସଂପୃକ୍ତିତଃ ଆଧିପତ୍ୟ ସ୍ଥାପନ କରିଥିଲା । ଅତଏବ ସେ ଉଭୟର ଶାସନାନୁସାରେ ଅଥଚ ତଦୀୟ ଦ୍ରବ୍ୟ ବା ସମ୍ପତ୍ତିରେ ଅପରିପୁଷ୍ଟାଙ୍ଗ ଓଡ଼ିଆ ଭାଷାଟିକୁ ପରିପୋଷଣ କରିବାକୁ ହୋଇଥିଲା । × × ସେହି ସମୟରେ ଓଡ଼ିଆ ଭାଷାରେ ପ୍ରାକୃତ ସତ୍ତ୍ୱ ସମଧିକ ଥିବାରୁ ଏହାର ଆଦିମ ଗ୍ରନ୍ଥ ଏହି ମହାଭାରତରେ ବହୁ ସ୍ଥଳରେ ସଂସ୍କୃତ ଭାଷା ଅପେକ୍ଷା ପ୍ରାକୃତରେ ସ୍ୱୀକୃତମତେ ଅନେକଧା ଶବ୍ଦ ବିଭକ୍ତି, କିମ୍ବା ପ୍ରତ୍ୟୟର ପ୍ରୟୋଗମାନ ନିହିତ କରାଯାଇଅଛି ।" (ପୃ-୨୬୬) ଏ ପ୍ରକରଣରେ ନନ୍ଦ ମହୋଦୟ ଓଡ଼ିଆ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ଓ ସିଦ୍ଧି ବଡ଼ ପାଣ୍ଡିତ୍ୟ ଭାବରେ ପ୍ରତିପାଦନ କରିଛନ୍ତି । ବିଭକ୍ତି, କିମ୍ବା ତଦ୍ଧିତ, ସମାସ ପ୍ରତ୍ୟୟର ନୀତି ଦୃଷ୍ଟିରୁ ସେ ସାରଳାଙ୍କ ମହାଭାରତରୁ ବହୁସଂଖ୍ୟକ ଶବ୍ଦ ଉଦ୍ଧାରପୂର୍ବକ ଆଲୋଚନା କରିଅଛନ୍ତି ।

ଏ ପ୍ରକରଣର ଦ୍ୱିତୀୟ ଭାଗରେ ସାରଳା ଦାସଙ୍କର କବିତ୍ୱ ବିଚାର କରି ମହାଭାରତରୁ ଅସାଧାରଣ କବିତ୍ୱ ଗୁଣରାଶି ବିଳସିତ କେତେକ ଅଂଶ ସେ ଉଦ୍ଧାର କରିଛନ୍ତି । ତାଙ୍କ ଭାଷାରେ —

"ଏ ମହାକବିଙ୍କର କବିତ୍ୱ ସର୍ବତ୍ର ମୃଦୁ ମଧୁର, ସୁଲଳିତାର୍ଥ ଚମତ୍କୃତ, ସଂଯତ ଭାବରେ ସମୁଚିତାଳଙ୍କାର ପରିଷ୍କୃତ ଓ ଲଳିତ ରସସ୍ଫୂର୍ତ୍ତି ବିଳସିତ ଏବଂ ଦ୍ରାକ୍ଷାପାକସୁରୁଚି ଥିବାରୁ ସହୃଦୟ ପ୍ରାଚୀନ କବିତ୍ୱ—ଭାବୁକମାନଙ୍କର ହୃଦ୍ୟ ଓ କର୍ଣ୍ଣ ରସାୟନ ପ୍ରାୟ ପ୍ରତୀୟମାନ ହୁଏ । + + ଏହି କବିଙ୍କର ବର୍ଣ୍ଣନା ଗୁଣରେ, ସର୍ବତ୍ର

ସରଳ ପ୍ରାଞ୍ଜଳ ଓ ସ୍ୱଭାବ ରମଣୀୟ ହୋଇଅଛି । ସ୍ଥାନେ ସ୍ଥାନେ ସ୍ତ୍ରୀ ରୂପବର୍ଣ୍ଣନା ପ୍ରଭୃତି ଅତ୍ୟନ୍ତ ମନୋହର ଓ ଭଚ୍ଚ ଭାବସମ୍ପନ୍ନ ++ ବର୍ଣ୍ଣନା ସ୍ଥଳମାନ ସଂଯତ ଅନାଡ଼ମ୍ବର ଭାବରେ ରଚିତ ହୋଇଥିବାରୁ ରସ ଭାବୁକମାନଙ୍କର ଅତିରିକ୍ତ ଚିତ୍ତରଞ୍ଜକ ରୂପେ ପ୍ରତିପାଦିତ ହୋଇଅଛି । ସେ ସାରଳା ମହାଭାରତରୁ ଚନ୍ଦ୍ରାବତୀଙ୍କ ରୂପବର୍ଣ୍ଣନା, ତ୍ରିପୁରମୋହିନୀଙ୍କର ଶୋଭାବର୍ଣ୍ଣନା, ଭୀମ ଓ ଦୁର୍ଯୋଧନଙ୍କର ଗଦାଯୁଦ୍ଧ ବର୍ଣ୍ଣନା ପ୍ରଭୃତି ଉଦ୍ଧାର କରି ସାରଳାଙ୍କର ଅସାମାନ୍ୟ ପ୍ରତିଭାର ସମ୍ୟକ ପରିଚୟ ଦେଇଛନ୍ତି । କବିଙ୍କର ମୌଳିକ ପ୍ରତିଭା ସୃଷ୍ଟ କେତେକ "ଅକୃତ୍ରିମ ରମଣୀୟ ଉପମାଦିର ପ୍ରୟୋଗ ପ୍ରଦର୍ଶନ କରି କବିଙ୍କର ମହତୀ ପ୍ରଶଂସା କରିଅଛନ୍ତି ।

**କବି ପରିଚୟ ଓ ସଂକୀର୍ଣ୍ଣଭାଗ**—ଏ ଦୁଇଟି ପ୍ରକରଣରେ ସାରଳା ଦାସଙ୍କର ଆତ୍ମପରିଚୟ ଏବଂ ଗ୍ରନ୍ଥଗତ ନାନା ମୌଳିକ ଚରିତର ବିଶଦ ଆଲୋଚନା କରାଯାଇଛି । ନନ୍ଦେ ସାରଳାଙ୍କ କାଳ ନିରୂପଣ, ଜନ୍ମସ୍ଥାନ ନିରୂପଣ ଏବଂ ପାରିବାରିକ ବିଭିନ୍ନ ତଥ୍ୟ ନିରୂପଣ କରିବାକୁ ଉଦ୍ୟତ ହୋଇ ତାଙ୍କର ରହସ୍ୟମୟ ଜନ୍ମ ସମ୍ପର୍କୀୟ କେତେକ ବିବରଣ ଯଥାର୍ଥ୍ୟ ବିଗ୍ରହ କରିଛନ୍ତି । ସାରଳା ଦାସଙ୍କ ପ୍ରଭାବ ଉତ୍କଳରେ କିପରି ଉପଲବ୍ଧି ତାହା ଦର୍ଶାଇବାକୁ ସେ ତିନିଟି ଖେଳରୁ ମହାଭାରତ ପ୍ରଭୃତି ଉକ୍ତି ପରି ଅନେକ ଉକ୍ତିର ସୂଚନା ଦେଇଛନ୍ତି ଏବଂ ଲେଖିଛନ୍ତି:- "ଏତାଦୃଶ କ୍ରମରେ ଅଷ୍ଟାଦଶ ପର୍ବ ମଧ୍ୟରେ ଗଭୀର ଅନୁସନ୍ଧାନ କଲେ ଆମ୍ଭମାନଙ୍କର ଆଦିମ ମହାକବିଙ୍କର ନାନାପ୍ରକାର ଅଭିଜ୍ଞତାର ପରିଚୟ ପଇପାରିବେ ।" (ପୃ—୬୭୯) ।

ସଂକୀର୍ଣ୍ଣଭାଗରେ କବିଙ୍କର ଧର୍ମମତ ପ୍ରଭୃତି ଓ ଭାଷାତଥା ଚରିତଗତ କେତେକ ନୂତନ ତଥ୍ୟର ଅବତାରଣା କରାଯାଇଛି ।

ଶେଷ ଅଂଶର "ଅନ୍ୱୟ ବାଧା" "ଛନ୍ଦୋନଦୃମ" "ମିତ୍ରାକ୍ଷର ମିଳନ" ଶୀର୍ଷକ ଆଲୋଚନାରେ ସାରଳା ଦାସଙ୍କ ପରବର୍ତ୍ତୀ ନନ୍ଦଙ୍କର ଅନ୍ତର୍ମୁଖୀ ବିଚାରଧାରା ହିଁ ଅଧିକତର ପ୍ରତିଭାତ ହୋଇଅଛି । ପଦେ କଥାରେ ନନ୍ଦ ମହୋଦୟ ମହାଭାରତକୁ ପୁରାଣ, କାବ୍ୟ, ଇତିହାସ, ବ୍ୟାକରଣ, ଛନ୍ଦଶାସ୍ତ୍ର, ଧର୍ମତତ୍ତ୍ୱ, ସାମାଜିକ ବିଧିବିଧାନ ଓ କବି ଜୀବନୀ ପ୍ରଭୃତି ନାନା ଦିଗରୁ ଆଲୋଚନା କରି କବିଙ୍କ ସଙ୍ଗେ ନିଜର ମହନୀୟତା ମଧ୍ୟ ପ୍ରତିପାଦନ କରିଛନ୍ତି ।

**ଓଡ଼ିଆ ସାହିତ୍ୟରେ ଶ୍ରୀଭାରତ ଦର୍ପଣ—**

ଗୋପୀନାଥ ନନ୍ଦ ଓଡ଼ିଆ ଭାଷାତତ୍ତ୍ୱ ଓ ଶବ୍ଦତତ୍ତ୍ୱବୋଧ ଅଭିଧାନର ପ୍ରଣେତା ରୂପେ ଅଖଣ୍ଡ ପ୍ରତିପତ୍ତି ଲାଭ କରିଅଛନ୍ତି । ସେ ଏକାଧାରରେ ଶବ୍ଦତତ୍ତ୍ୱବିତ୍, ଅନୁବାଦକ, ଅଭିଧାନ ପ୍ରଣେତା, ସମାଲୋଚକ ଏବଂ କବି । ତାଙ୍କର ଏ ସମସ୍ତ ରଚନା ମଧ୍ୟରେ ଜାତୀୟ ସାହିତ୍ୟ ବିକାଶ ବିଧାନ ପ୍ରଚେଷ୍ଟା ହିଁ ବଳବତ୍ତର । ଶ୍ରୀ ଭାରତଦର୍ପଣ କେବଳ ଓଡ଼ିଆ ସାହିତ୍ୟରେ ନୁହେଁ; ଭାରତୀୟ ଯେ କୌଣସି ପ୍ରାଦେଶିକ ସାହିତ୍ୟରେ ପ୍ରାଦେଶିକ ଭାଷାର ଶ୍ରେଷ୍ଠ କୃତି ରୂପେ ବିବେଚିତ ହେବ, ପ୍ରାଚୀନ ଓଡ଼ିଆ ସାହିତ୍ୟର ଆଲୋଚନା କରିବାକୁ ଯାଇ ଏକାଧାରରେ ଜାତୀୟ ଜୀବନର ଧର୍ମ, ଦର୍ଶନ, ସଂସ୍କୃତି ଓ ଭାବଭକ୍ତି ଯେପରି ବ୍ୟାଖ୍ୟାନ କରିଅଛନ୍ତି ତଦ୍ୱାରା ସାରଳାଙ୍କର ମହତ୍ତ୍ୱ ପ୍ରଖ୍ୟାପନ ସଙ୍ଗେ ସ୍ୱୟଂ ଲେଖକ ମଧ୍ୟ ଅଦ୍ୱିତୀୟ ରୂପେ ଆତ୍ମପ୍ରକାଶ କରିଅଛନ୍ତି । ତାଙ୍କର ବିପୁଳ ପାଣ୍ଡିତ୍ୟର ଶ୍ରେଷ୍ଠ ସମ୍ମାନ ରୂପେ ସେ ଯେଉଁ ଉପାଧିର ଲାଭ କରିଥିଲେ ତାହାର ସ୍ୱାଭାବିକତା ଦୃଷ୍ଟିରୁ ସର୍ବଦା ବିସ୍ମରଣୀୟ ।

---

# ମହାକବି ସାରଳା

## ଶ୍ରୀ ଜୟକୃଷ୍ଣ ମିଶ୍ର

ଉତ୍କଳ ସାହିତ୍ୟର ଅଭିବୃଦ୍ଧି ଓ ବିଶେଷତ୍ୱ ବିଭିନ୍ନ ଯୁଗରେ ଯେପରି ଓ ଯେଉଁ ଯେଉଁ ପରିସ୍ଥିତି ଓ ଅବସ୍ଥା ଭେଦରେ ସମ୍ଭବ ହୋଇଛି, ତାହାର ଧାରାବାହିକ ଆଲୋଚନା କରିବା ପ୍ରତ୍ୟେକ ସାହିତ୍ୟ-ପ୍ରେମୀର କର୍ତ୍ତବ୍ୟ ଏବଂ ଯୁଗୋଚିତ ପରିବର୍ତ୍ତନ ଭିତରେ ସାହିତ୍ୟ ପରିସରରେ ଯେଉଁ ଚିନ୍ତାଧାରା ସତ୍ୟତାର ବିଭିନ୍ନ ଦୃଷ୍ଟି କୋଣରୁ ରୂପରେଖ ପାଇ ଆସିଛି ତାର ସମ୍ୟକ ଗବେଷଣା କରିବା ଏକାନ୍ତ ବାଞ୍ଛନୀୟ । ଉତ୍କଳ ସାହିତ୍ୟର ଇତିହାସ ଧାରାବାହିକ ଭାବରେ ତଥା ପୂର୍ଣ୍ଣାଙ୍ଗ ଅବସ୍ଥାରେ ଏ ପର୍ଯ୍ୟନ୍ତ ସଂକଳିତ ହୋଇ ନ ଥିଲେ ସୁଦ୍ଧା ବିଭିନ୍ନ ଯୁଗର ଧର୍ମକଳ୍ପନା, ରାଜନୈତିକ, ସାମାଜିକ, ଅର୍ଥନୈତିକ ପରିସ୍ଥିତି ଏବଂ ସର୍ବୋଚ୍ଚ ଆଦର୍ଶ ନୀତିନିୟନ୍ତ୍ରିତ ଜୀବନ ପ୍ରବାହର ବାସ୍ତବ ଆଲେଖ୍ୟ ବିଭିନ୍ନ ଯୁଗର ସାହିତ୍ୟରେ ଅନେକାଂଶରେ ପ୍ରଦର୍ଶିତ ହୋଇ ପାରିଛି ଏହା ନିଃସନ୍ଦେହରେ କୁହାଯାଇ ପାରେ । ସମଗ୍ର ଜୀବନର ସମସ୍ୟାମୟ ବିଭିନ୍ନ ପର୍ଯ୍ୟାୟରେ ଯେଉଁଠି ଯେଉଁ ପରିମାଣରେ ମହତ୍ତ୍ୱ ପ୍ରତିପାଦିତ ହୋଇ ଆସିଛି କିମ୍ବା ବିଶୃଙ୍ଖଳ, ଅନିୟନ୍ତ୍ରିତ ଜୀବନର ଅପରିହାର୍ଯ୍ୟ ଦୋଷ ଓ ଭ୍ରମଗୁଡ଼ିକ ଯେପରି ଜୀବନକୁ ଦୂଷିତ ଓ ଅସତ୍ କରିଛି ତାହାର ପ୍ରତ୍ୟେକ ଛବି ପୁଙ୍ଖାନୁପୁଙ୍ଖ ଭାବରେ ଓ ସର୍ବାଧିକ ପରିମାଣରେ ଅଭିବ୍ୟକ୍ତ ହୋଇ

କରିଛନ୍ତି ଉତ୍କଳର ପ୍ରାଣମୟ ପୁରାଣ ସାହିତ୍ୟର ବଳିଷ୍ଠ ଯୋଜନା ବଳରେ । ଉତ୍କଳ ସାହିତ୍ୟରେ ପୁରାଣ ସୃଷ୍ଟି ସଂସ୍କୃତ ପୁରାଣ ସାହିତ୍ୟର ସମାନ୍ତରାଳ ଭାବରେ ଗତି କରିଥିଲେ ସୁଦ୍ଧା ପ୍ରାଚୀନ ଉତ୍କଳୀୟ ପୁରାଣ ଶିଳ୍ପୀମାନେ ନିଜ ନିଜର ସ୍ୱାତନ୍ତ୍ର୍ୟ, ବ୍ୟକ୍ତିତ୍ୱ, ଗଭୀର ଅନୁଭୂତି ଓ ମୌଳିକ ପରିକଳ୍ପନା ପ୍ରସୂତ ପ୍ରସଙ୍ଗଗୁଡ଼ିକର ସମାବେଶ କରିବାରେ ଅଦ୍ୱିତୀୟ ବୋଲି ଦୃଢ଼ ଭାବରେ ସ୍ୱୀକାର କରାଯାଇଛି । ସଂସ୍କୃତ ସାହିତ୍ୟର ମହାପୁରାଣ ଓ ପୁରାଣ ଗୁଡ଼ିକର ଛାୟା ଉତ୍କଳୀୟ ତଥା ବାହ୍ୟତ କୃତୀଗୁଡ଼ିକ ଉପରେ ବିଶେଷ ଭାବରେ ପଡ଼ିଛି ବିଷୟବସ୍ତୁର ପରିଶୀଳନରେ । ସଂସ୍କୃତ ରାମାୟଣ, ମହାଭାରତ, ଭାଗବତ ଓ ଅଷ୍ଟାଦଶ ପୁରାଣ ପ୍ରଭୃତିର ଅବଲମ୍ବନରେ ଓଡ଼ିଶାର ଛନ୍ଦାନୁରୂପ ମହାପୁରାଣ ଓ ପୁରାଣ ଗ୍ରନ୍ଥଙ୍କ ସର୍ଜିତ ହୋଇଥିଲେ ସୁଦ୍ଧା, ଓଡ଼ିଆ ଜାତି ଓ ଓଡ଼ିଆ ଗର୍ବ ଗୌରବର ନିଖୁଣ ଚିତ୍ର ଗୁଡ଼ିକ ବିଭିନ୍ନ ପ୍ରସଙ୍ଗରେ ବହୁ ରୂପରେ ଦେଖା ଦେଇଛି । ପଞ୍ଚଦଶ ଶତାବ୍ଦୀର ବହୁ ପୂର୍ବରୁ ଜନିତ ଓଡ଼ିଆ ସାହିତ୍ୟ କ୍ରମବର୍ଦ୍ଧିଷ୍ଣୁ ଶନ୍ତାଧାର ଭିତରେ ରୂପାୟିତ ହୋଇଥିଲେ ସୁଦ୍ଧା ମହାପୁରାଣ, ପୁରାଣ ରଚନା ପ୍ରତି ସବିଶେଷ ଆଗ୍ରହ ଜାତ ହୋଇ ନ ଥିଲା । ବତ୍ସାଦାସ ଓ ମାର୍କଣ୍ଡ ପ୍ରଭୃତିଙ୍କର ଲେଖନୀ ପୌରାଣିକ କଥାବସ୍ତୁ ଓ ଚରିତ୍ର ଆହରଣ କରିଥିଲା ସତ, ମାତ୍ର ଧାରାବାହିକ ପୁରାଣ ପରିକଳ୍ପନାର ଦ୍ୱାର ପ୍ରଥମେ ହିଁ ଉନ୍ମୁକ୍ତ ହେଲା ଶୂଦ୍ରମୁନି ସାରଳାଙ୍କର ଅପ୍ରତିଦ୍ୱନ୍ଦ୍ୱୀ ଯୋଜନାବଳୀରେ । ତାଙ୍କର ଏହି ବିରାଟ ପୁରାଣ ପ୍ରସଙ୍ଗ କେବଳ ପଞ୍ଚଦଶ ଶତାବ୍ଦୀ ଲାଗି ନୁହେଁ, ଅତୀତ ଓ ଭବିଷ୍ୟତ ବହୁଯୁଗ ଲାଗି ସାହିତ୍ୟ ଓ ସାହିତ୍ୟିକମାନଙ୍କ ଉପରେ ଅକ୍ଷୟପାତ କରି ଆସିଛି ଓ ସ୍ୱାଭାବିକ ଭାବରେ କରୁଥିବ ମଧ୍ୟ । ତାଙ୍କ ବଳିଷ୍ଠ

ରଚନା କୌଶଳ ଓ ପ୍ରବୀଣ ମହାକବି ସୁଲଭ ଯୋଜନାର ଚମତ୍କାର ଶୃଙ୍ଖଳା ଅନେକ ଯୁଗ ପର୍ଯ୍ୟନ୍ତ କବି, ଶ୍ରୋତୃକ ଓ ସାହିତ୍ୟିକର କଳ୍ପନା କୌଶଳକୁ ଅଧିକ ସମର୍ଥ, ସୁନ୍ଦର ଓ ଚଞ୍ଚଳ କରିବା ଦିଗରେ ପଦେ ପଦେ ସାହାଯ୍ୟ କରିବ, କହିବା ବାହୁଲ୍ୟ ମାତ୍ର ।

"ନରତ୍ୱଂ ଦୁର୍ଲଭଂ ଲୋକେ
ବିଦ୍ୟା ତତ୍ରୈବ ଦୁର୍ଲଭା
କବିତ୍ୱଂ ଦୁର୍ଲଭଂ ତତ୍ର
ଶକ୍ତିସ୍ତତ୍ର ସୁଦୁର୍ଲଭା ।"

ଏହି ଉକ୍ତିର ଯଥାର୍ଥ୍ୟପୂର୍ଣ୍ଣ ଭାବରେ ପ୍ରତିପାଦିତ ହୋଇଛି ମହାକବି ସାରଳା, ବଳରାମ, ଜଗନ୍ନାଥ ଓ ଉପେନ୍ଦ୍ର ପ୍ରଭୃତିଙ୍କର ରଚନାବଳୀରେ । ବିଶେଷତଃ ଶୂଦ୍ରମୁନିଙ୍କର ମହାଭାରତ ଧର୍ମ, ସମାଜ, ଆଦର୍ଶ, ନୀତି, ସଦାଚାର ଓ ଶୃଙ୍ଖଳା ପ୍ରଭୃତିର ଚରମ ପ୍ରତୀକ ହୋଇ ସତ୍ୟପୂତ ଆର୍ଯ୍ୟ-ଜୀବନର ଜ୍ୱଳନ୍ତ ପରାକାଷ୍ଠା ରୂପେ ଯେପରି ଦଣ୍ଡାୟମାନ ହୋଇଛି, ଖାଲି ଓଡ଼ିଆ ସାହିତ୍ୟ କାହିଁକି ଦେଶଦେଶାନ୍ତରରେ ତାହାର ତୁଳନା ବିରଳ । ସଂସ୍କୃତ ସାହିତ୍ୟରେ ମହାକବି ବେଦବ୍ୟାସ ଓ ବାଲ୍ମୀକି ପ୍ରଭୃତିଙ୍କର ସ୍ଥାନ ଯେପରି ଉଚ୍ଚ, ଓଡ଼ିଆ ସାହିତ୍ୟରେ ତଥା ଭାରତୀୟ ସମସ୍ତ ପ୍ରାଦେଶିକ ସାହିତ୍ୟରେ ମହାକବି ସାରଳାଙ୍କର ଆସନ ସେପରି ଉଚ୍ଚ ଓ ଅପ୍ରତିଦ୍ୱନ୍ଦ୍ୱୀ । ସିଦ୍ଧ ସାଧକ ସେ ଏବଂ ଝଙ୍କଡ଼ବାସିନୀ ମହାଶକ୍ତି ଶାରଳାଙ୍କର ଅଭୟବରରେ ତାଙ୍କର ଜୀବନ ପ୍ରବନ୍ଧ ଓ ଅନୁପ୍ରାଣିତ । ସିଦ୍ଧିଲାଭ କରି ସେ ଯେପରି ଦିବ୍ୟ ଚକ୍ଷୁଷ୍ମାନ୍ ହୋଇ ଦୂରଦୃଷ୍ଟି ବଳରେ ଭାରତ ଗୌରବମୟ ଦଶ୍ୟାବଳୀର ସନ୍ଧାନ କରିଛନ୍ତି ତାହାର ପଟାନ୍ତର ନାହିଁ । ଶୂଦ୍ର ହେଲେ ମଧ୍ୟ

ଏହି ସିଦ୍ଧିଲାଭ ଫଳରେ ସେ ଅର୍ଯ୍ୟ ଜୀବନର ଶୁଦ୍ଧ ଆର୍ଯ୍ୟ ପରମ୍ପରା ଓ ବହୁତୋମୁଖୀ ସଂସ୍କାରମୂଳକ ଉପାଦାନଗୁଡ଼ିକର ପୂର୍ଣ୍ଣ ଅଧିକାରୀ । ବିଦ୍ୟା ଦେବୀ ପୂର୍ଣ୍ଣାଙ୍ଗ ହୋଇ ତାଙ୍କ ଜୀବନ ପୀଠରେ ପଦାର୍ପଣ କରିଛନ୍ତି ଏବଂ ଶକ୍ତି ଦେବୀ ତାଙ୍କର ସିଦ୍ଧ ଓ ସତ୍ୟପୂତ ହୃଦୟକୁ ଅନୁପ୍ରାଣୀତ କରିଅଛନ୍ତି ଆଧ୍ୟାତ୍ମିକତାର ଅଖଣ୍ଡ ପ୍ରଭାବବଳରେ । ସାରଳା ଦେବୀଙ୍କର ଉପାସକ ଭାବରେ ଆଦ୍ୟ ପର୍ବର ପ୍ରଥମ ଭାଗରେ ଶୂଦ୍ରମୁନି ଗାନ କରିଛନ୍ତି,—

ମହା ଯୋଗେଶ୍ୱରୀ ସେହୁ ପରମ ବୈଷ୍ଣବୀ
ପ୍ରତ୍ୟକ୍ଷ ବରଦାୟିନୀ ପରମ ସାଧବୀ ।
ବାଞ୍ଛା ଫଳକୁ ସେ ଦେବୀ ସାର୍ଥକ କରଇ,
ପାଷାଣଗାର ତା ବାକ୍ୟ କେବେ ନ ଛୁଟଇ ।
ସର୍ବମଙ୍ଗଳା ରୂପିଣୀ ମାତା ମଡ଼େଶ୍ୱେଳା,
ଚନ୍ଦ୍ରର ରସ ଖେଳଇ ହୋଇ କୁତୂହଳା ।
ସାରଳା ଚଣ୍ଡୀ ସାକ୍ଷାତେ ଅଟଇ ଭୈରବୀ,
ତାହାର ପୁତ୍ର ସାରଳା ଦାସ ମୁହିଁ କବି ।
ସୁପ୍ରସନ୍ନେ ଆଜ୍ଞା ମୋତେ ଦେଲେ ଶାକମ୍ଭରୀ,
କଲି ତୁ ବିଳାସ ମହାଭାରତ ବିସ୍ତାରି ।

ସାଧକ ଜୀବନ ପକ୍ଷରେ ହିଁ ମହାଭାରତ ପରି ବିରାଟ କଳେବର ବିଶିଷ୍ଟ ମହାପୁରାଣ ରଚନା ସମ୍ଭବପର । ଦିବ୍ୟଦୃଷ୍ଟି ଆଗରେ ମହାଭାରତ ଯୁଗର ଘଟଣାବଳୀ ଘଟିଯାଇଛି । ବାସ୍ତବ ରୂପରେ ରୂପାୟିତ ହୋଇ ଏବଂ ରାଜନୀତି, ଧର୍ମନୀତି, ସମାଜନୀତି, ଓ ବୈୟକ୍ତିକ ଜୀବନ ନୀତି ଗୁଡ଼ିକର ପୁଙ୍ଖାନୁପୁଙ୍ଖ

ଅନୁସରଣ କରି ସମସ୍ୟାମୟ ଛନ୍ଦଗୁଡ଼ିକ ଜୀବନ୍ତ ଓ ଜାଜ୍ୱଲ୍ୟ-ମାନ ହୋଇଅଛି । ମହାକବି ମୂଳ ମହାଭାରତର କ୍ରମାନୁସରଣରେ ସାମାନ୍ୟ ବ୍ୟତିକ୍ରମ କରି ପ୍ରବର୍ତ୍ତିତ ଗ୍ରନ୍ଥକୁ ବିଭକ୍ତ କରିଛନ୍ତି ନିମ୍ନଲିଖିତ ଭାବରେ—

| ସଂସ୍କୃତ | ଓଡ଼ିଆ |
|---|---|
| ୧ । ଆଦିପର୍ବ | (୧) ଆଦିପର୍ବ ଓ (୨)ମଧ୍ୟ ପର୍ବ |
| ୨ । ସଭାପର୍ବ | (୩) ସଭାପର୍ବ |
| ୩ । ବନପର୍ବ | (୪) ବନ ପର୍ବ |
| ୪ । ବିରାଟ ପର୍ବ | (୫) ବିରାଟପର୍ବ |
| ୫ । ଉଦ୍ୟୋଗପର୍ବ | (୬) ଉଦ୍ୟୋଗ ପର୍ବ |
| ୬ । ଭୀଷ୍ମ ପର୍ବ | (୭) ଭୀଷ୍ମ ପର୍ବ |
| ୭ । ଦ୍ରୋଣ ପର୍ବ | (୮) ଦ୍ରୋଣ ପର୍ବ |
| ୮ । କର୍ଣ୍ଣପର୍ବ | (୯) କର୍ଣ୍ଣପର୍ବ |
| ୯ । ଶଲ୍ୟପର୍ବ | (୧୦) ଶଲ୍ୟପର୍ବ ଓ (୧୧) ଗଦାପର୍ବ |
| ୧୦ । ସୌପ୍ତିକ ପର୍ବ | (୧୨) କାଁଷିକା ପର୍ବ ବା ଐଷିକ ପର୍ବ - |
| ୧୧ । ସ୍ତ୍ରୀ ପର୍ବ | (୧୩) ନାରୀପର୍ବ |
| ୧୨ । ଶାନ୍ତିପର୍ବ | ୧୪) ଶାନ୍ତିପର୍ବ |
| ୧୩ । ଅନୁଶାସନ ପର୍ବ | × |
| ୧୪ । ଅଶ୍ୱମେଧ ପର୍ବ | (୧୫) ଅଶ୍ୱମେଧ ପର୍ବ |
| ୧୫ । ଆଶ୍ରମିକ ପର୍ବ | (୧୬) ଆଶ୍ରମିକ ପର୍ବ |
| ୧୬ । ମୌଷଳ ପର୍ବ | (୧୭) ମୂଷଳୀ ପର୍ବ |
| ୧୭ । ମହାପ୍ରସ୍ଥାନ ପର୍ବ | (୧୮) ସ୍ୱର୍ଗାରୋହଣ ପର୍ବ |
| ୧୮ । ସ୍ୱର୍ଗାରୋହଣ ପର୍ବ | |

ମହାଭାରତ ବ୍ୟତୀତ ଚଣ୍ଡୀପୁରାଣ, ବିଲଙ୍କାରାମାୟଣ, ଲକ୍ଷ୍ମୀନାରାୟଣ ବଚନିକା ପ୍ରଭୃତି ଶୂଦ୍ରମୁନି ପ୍ରଣୟନ କରିଅଛନ୍ତି । ସବୁଗୁଡ଼ିକରେ ତାଙ୍କ ସ୍ୱାଧୀନ ଚିନ୍ତାଧାରା, ମୌଳିକ ଯୋଜନା, ଜୀବନ ଦର୍ଶନ ଓ ସ୍ୱାତନ୍ତ୍ର୍ୟ ପ୍ରତିପାଦିତ ହୋଇଛି ଅକ୍ଷୁଣ୍ଣଭାବରେ । ମହାକବିଙ୍କ ଅନବଦ୍ୟ ଶୈଳୀର ଚମତ୍କାରିତା ପ୍ରତି ପ୍ରସଙ୍ଗରେ ଓ ପ୍ରତ୍ୟେକ ଛନ୍ଦରେ ଚରମ ଅଭିବ୍ୟକ୍ତି ଲାଭ କରିଛି । ନିମ୍ନଲିଖିତ ଭାବରେ ତାଙ୍କ କବିତା ସନ୍ନିହିତ ପରିକଳ୍ପନା ବିଳାସର ଯଥୋଚିତ ବିଶ୍ଳେଷଣ କରାଯାଇ ପାରେ ଏବଂ ମହାକବିତ୍ୱର ପରିସୂଚକ ହେବାଲାଗି ଉପାଦାନ-ସମୂହ ତାଙ୍କ ମହାଭାରତ ପ୍ରଭୃତିରୁ ଆହରଣ କରାଯାଇ ପାରେ;—(୧) ଆଦର୍ଶ ବିଷୟବସ୍ତୁ (୨) ସନ୍ଦର୍ଭ ସଜ୍ଜୀକରଣ (୩) ପ୍ରସଙ୍ଗ ନିର୍ଦ୍ଦେଶପୂର୍ବକ କଥାବସ୍ତୁ ନିହିତ ବିଭିନ୍ନ ପର୍ଯ୍ୟାୟର ଯୁକ୍ତିଯୁକ୍ତ ଅଭିବ୍ୟକ୍ତି (୪) ଆଦର୍ଶ ଚରିତ୍ର ସମୂହର ଆହରଣ (୫) ସର୍ବକଲ୍ୟାଣକର ସାଧନ ଭିତରେ ଆଦର୍ଶ ନରନାରୀ ଓ ସେମାନଙ୍କର କର୍ମଜୀବନର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ (୬) ଉତ୍ତମ, ମଧ୍ୟମ ଓ ଅଧମ ଭେଦରେ ଚରିତ୍ରାବଳୀର ସମସ୍ୟାମୟ ଜୀବନ ଯାତ୍ରାରେ ସ୍ଥାନ ଓ ପରସ୍ପର ମଧ୍ୟରେ ଚତୁରତାର ସହିତ ସମ୍ବନ୍ଧ ସଂସ୍ଥାପନ (୭) ସାହିତ୍ୟାନୁସୃତ ଶୃଙ୍ଗାର, ବୀର, କରୁଣ, ରୌଦ୍ର, ଭୟାନକ, ବୀଭତ୍ସ, ହାସ୍ୟ ପ୍ରଭୃତି ରସ ଗୁଡ଼ିକର ଯଥା ସ୍ଥାନୋଚିତ ସମାବେଶ ଏବଂ ସେ ଗୁଡ଼ିକ ବଳରେ ମହାପୁରାଣର ସର୍ବାଙ୍ଗ ସୁନ୍ଦର ଅଭିବୃଦ୍ଧି (୮) ବଳିଷ୍ଠ ଭାବଧାରା ସନ୍ନିହିତ ରଚନା ବୈଚିତ୍ର୍ୟ ଓ ଚିତ୍ତ ବିନୋଦକ ଉପାଦାନ ଗୁଡ଼ିକର ସନ୍ନିବେଶ, (୯) ସରଳ, ପ୍ରାଞ୍ଜଳ, ମଞ୍ଜୁଳ ଓ ଭାବରସ-ଗର୍ଭକ ଯୋଜନାର ନୈପୁଣ୍ୟ (୧୦) ସରସ ସାବଲୀଳ ଭାଷା ଓ ତାହାର ମନୋରଞ୍ଜନ ମାଧୁରୀ (୧୧)

ତଦାନୀନ୍ତନ ଯୁଗ ପ୍ରବର୍ତ୍ତିତ ସର୍ବବୋଧ ଅର୍ଥବ୍ୟଞ୍ଜକ ଶବ୍ଦାବଳୀ (୧୨) ଛନ୍ଦ ପ୍ରୟୋଗରେ ସ୍ୱାତନ୍ତ୍ର୍ୟ (୧୩) ବିଭିନ୍ନ ଘଟଣାବଳୀର ସମାବେଶରେ ମୂଳଗ୍ରନ୍ଥମାନଙ୍କରୁ ବ୍ୟତିକ୍ରମ (୧୪) ଜନ୍ମଭୂମିର ଉତ୍କର୍ଷ ପ୍ରତିପାଦନ ଓ ବହୁତୋମୁଖୀ ଗୌରବବିଜୟର ବର୍ଣ୍ଣନାରେ ସ୍ୱାତନ୍ତ୍ର୍ୟ, (୧୫) ଜାତୀୟତାର ଉଜ୍ଜ୍ୱଳ ଛନ୍ଦ ଗୁଡ଼ିକ ବଳରେ ନୂତନ ସୃଷ୍ଟି, (୧୬) ସାମାଜିକ ଚିତ୍ରଣ ଓ ପରିବର୍ତ୍ତିତ ସମାଜର ବିଭିନ୍ନ ପନ୍ଥା, (୧୭) ପଲ୍ଲୀ ଚିତ୍ରଣ ଓ ତାର ପୁରାଣ ସାହିତ୍ୟରେ ସ୍ଥାନ (୧୮) ପ୍ରସାଦ, ଓଜ, ଗାମ୍ଭୀର୍ଯ୍ୟ ପ୍ରଭୃତି ମହା କବିବୃନ୍ଦ-ସୁଲଭ ଗୁଣାବଳୀର ଯଥୋଚିତ ସନ୍ନିବେଶ, (୧୯) ଶିକ୍ଷା ପଦ୍ଧତିର ଚିରନ୍ତନ ଓ ଅନାବିଳ କ୍ରମନିରୂପଣ, (୨୦) ଆଦର୍ଶ ରାଜନୀତି (୨୧) ଆଦର୍ଶ ଧର୍ମନୀତି, (୨୨) ଜୀବନ ନିୟାମକ ଆଦର୍ଶ ସତ୍ୟନୀତି, (୨୩) ସମୃଦ୍ଧ କଲ୍ୟାଣ କଳ୍ପେ ଆବଶ୍ୟକୀୟ ଦଣ୍ଡନୀତି ଓ ଅର୍ଥନୀତି, (୨୪) ସଂସ୍କାର ପରମ୍ପରା ଓ ସଦାଚରଣର ପ୍ରକୃଷ୍ଟ ପଦ୍ଧତି ନିରୂପଣ, (୨୫) ସତ୍ ଓ ଅସତ୍, ପାପ ଓ ପୁଣ୍ୟ ଦ୍ରବ୍ୟ ଓ ଅଦ୍ରବ୍ୟ, ଗୁଣୀ ଓ ନିର୍ଗୁଣ, ସୁଖୀ ଓ ଦୁଃଖୀ, ମିଳନ ଓ ବିରହ ପ୍ରଭୃତି ପରସ୍ପର ବିରୋଧାତ୍ମକ ଉପାଦାନ ଗୁଡ଼ିକ ବଳରେ ବିଭିନ୍ନ ଶ୍ରେଣୀୟ ଚରିତ୍ର ସମାବେଶ, (୨୬) ଦ୍ୱନ୍ଦ୍ୱ ଏବଂ ଏହାର ତାତ୍ପର୍ଯ୍ୟ ଓ ବାସ୍ତବତା ଧର୍ମଜୀବନ ଓ କର୍ମଜୀବନର ଯଥାର୍ଥ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ତାହାର ଅପରିହାର୍ଯ୍ୟ ପ୍ରୟୋଗ କୁଶଳତା, (୨୭) ନଗର ନଗରୀ, ବନ, ଜନପଦ, ଗିରି କାନ୍ତାର, ନଦନଦୀ, ପ୍ରଭୃତିର ଅତିକାୟ ଚିତ୍ରଣ, ଋତୁମାନଙ୍କର ପୂର୍ଣ୍ଣାଙ୍ଗ ବର୍ଣ୍ଣନା, (୨୮) ଯୁଦ୍ଧ, ସନ୍ଧି, ସମ୍ବାଦ ପ୍ରେରଣ, ଘୋଷଣା ପ୍ରଭୃତିର ବର୍ଣ୍ଣନା ବହୁଳ ଚମତ୍କାରିତା, (୨୯) ଗଭୀର ମନସ୍ତତ୍ତ୍ୱ ସମ୍ବଳିତ କଳ୍ପନାବିଳାସ ଓ ମହାକବିଙ୍କର ଦିବ୍ୟଦୃଷ୍ଟି ଓ ଦୂରଦୃଷ୍ଟି

ପରିସ୍ଥିତିର ଜୀବନ ଦର୍ଶନ, ଧର୍ମତତ୍ତ୍ୱ, ମହାନୁଭବତା, (୩୦) ଏବଂ ସର୍ବୋପରି ସ୍ୱକୀୟ ବଳିଷ୍ଠ ପ୍ରତିଭା ଓ ଶକ୍ତି ସଂଭୂତ ସର୍ବାଙ୍ଗୀନ ବୈଶିଷ୍ଟ୍ୟ ସୃଷ୍ଟି ।

ବିଭିନ୍ନ ପର୍ଯ୍ୟାୟରେ ମହାକବିଙ୍କ ପରିବର୍ତ୍ତିତ ଦୃଷ୍ଟିକୋଣ ବିଭିନ୍ନ ଚରିତ୍ର ଚିତ୍ରଣ କଲାବେଳେ ସମୃଦ୍ଧ ଜୀବନର ବାସ୍ତବ ଆଲେଖ୍ୟ ଅଙ୍କନ କରୁ କରୁ ସ୍ଥଳବିଶେଷରେ ସ୍ଖଳିତ ହୋଇଛନ୍ତି କିମ୍ବା ଶିଥିଳ ହୋଇ ପଡ଼ିଛନ୍ତି । ସ୍ଥଳବିଶେଷରେ ବର୍ଣ୍ଣନା ସାମାନ୍ୟ ନଗ୍ନତାର ଆଶ୍ରୟ ନେଇଥିଲେ ସୁଦ୍ଧା ମହାକବି ଭବ୍ୟତାର କିମ୍ବା ଶ୍ଳୀଳତାର ସଭ୍ୟତାର ଅପଳାପ କରିନାହାନ୍ତି । ନାରୀ ଚିତ୍ରଣରେ ବସନ, ବ୍ୟସନାଦିର ଚିତ୍ରବେଳେ ଏବଂ ଭୂଷଣାଦିର ମଣ୍ଡନ ବର୍ଣ୍ଣନାରେ କବିଙ୍କର ଦୃଷ୍ଟି ଉପରେ ବିଶେଷ ପରିମାଣରେ ଆଲୋକପାତ କରିଛନ୍ତି ଉତ୍କଳର ପୁରପଲ୍ଲୀ ଓ ଉତ୍କଳୀୟ ତଦାନୀନ୍ତନ ବେଶଭୂଷାଦିର ଜନ୍ମ । ମହାକାବ୍ୟର ବିଶେଷତ୍ୱ ଯେଉଁ ଯେଉଁ ଶବ୍ଦାଳଂକାର, ଅର୍ଥାଳଂକାର ଗୁଣକରେ ଅଭିବ୍ୟକ୍ତ ହୋଇଥାଏ, ସେଗୁଡ଼ିକର ବାହୁଲ୍ୟ ବିଭିନ୍ନ ପ୍ରସଙ୍ଗରେ ସାରଳାଙ୍କ ରଚନାରେ ପରିଲକ୍ଷିତ ହୁଏ । ସାରଳା ସାହିତ୍ୟର ବହୁମୁଖୀ ପ୍ରଭାବ ଉଣାଅଧିକ ପରିମାଣରେ ପରବର୍ତ୍ତୀ ମହାକବି ଓ କବିମାନଙ୍କ ଉପରେ ପଡ଼ି ଅଛି ଓ ରମହାଭାରତ ଦୃଷ୍ଟିରୁ ପଢ଼ିବା ସ୍ୱାଭାବିକ ମଧ୍ୟ ।

ମହାପୁରାଣର ପାଠକ୍ରମ ସର୍ବସାଧାରଣ ପାଠକ ପକ୍ଷେ ସମ୍ଭବ ନୁହେଁ । ମହାକବିଙ୍କର ହୃଦୟ ନିଃସୃତ ରଚନାର ବିଶେଷତ୍ୱ ହୃଦୟଙ୍ଗମ କରି କରିବା କେବଳ ସରସ ଗ୍ରାହକ ଓ ସୁପାଠକ ପକ୍ଷରେ ସମ୍ଭବ ହୋଇଥାଏ । ତାଙ୍କ ମହାଭାରତର ମୌଳିକ ରଚନା ପ୍ରତି ଦୃଷ୍ଟି ଦେଲେ ଦେଖାଯାଏ, ପ୍ରତ୍ୟେକ

ପଙ୍‌କ୍ତିରେ ସମାନ ଅକ୍ଷର ନାହିଁ । କେଉଁଠି ୧୪, କେଉଁଠି କେଉଁ
୧୦ ଅକ୍ଷରଠାରୁ ୧୪ ଅକ୍ଷର ଭିତରେ ଏବଂ ଅନ୍ୟ କେଉଁଠି ମଧ୍ୟ
୧୪ରୁ ଅଧିକ ଅକ୍ଷର ବିଭିନ୍ନ ଧାଡ଼ିରେ ରହିଛି । ତେଣୁ ଗୋଟିଏ
ସମୟରେ ଆବୃତ୍ତି କରିବା ଅର୍ଥ ଅନର୍ଥ ସୃଷ୍ଟି କରିବା ଓ ଆବୃତ୍ତିର
ପ୍ରକୃତ କ୍ରମ ନ ଜାଣି ରସ ପରିବେଷଣରେ ବାଧା ସୃଷ୍ଟି କରିବା ।
ସରସ ପ୍ରବୀଣ ପାଠକ ଏହି ଅସମ ଅକ୍ଷର ବିଶିଷ୍ଟ 'ଦାଣ୍ଡୀ'
ପଦ୍ଧତିର ଅବଲମ୍ବନରେ ବିଭିନ୍ନ ରସ ଓ ବିଭିନ୍ନ ଭାବ ଫୁଟାଇବା
ଲାଗି ଅନେକ ପ୍ରକାର ରାଗରାଗିଣୀ ସୃଷ୍ଟି କରିପାରେ । ମହାଭାରତର
ଯେଉଁ ପର୍ଯ୍ୟାୟ ଯେଉଁ ରସ ବା ରସ ସମୁଚ୍ଚୟର ବଶବର୍ତ୍ତୀ
ତଦନୁରୂପ ଆବୃତ୍ତି ସର୍ବଥା ବାଞ୍ଛନୀୟ । ସମର ସଜ୍ଜାଲାଗି ସମର
ସମ୍ଭାର ଆବୃତ୍ତିରେ ଯେଉଁ କ୍ରମ ଆବଶ୍ୟକ, ହାସ୍ୟରସ ବା ଶାନ୍ତ
ରସର ତାହା ଯଥୋଚିତ ବୋଲି ବିବେଚିତ ହୋଇ ନ ପାରେ ।
ଦୁଃଖର ବିଷୟ ଅଧୁନାତନ ମୁଦ୍ରିତ ମହାଭାରତରେ ମୁଦ୍ରାକର-
ମାନେ ଅତି ପଣ୍ଡିତମନ୍ୟ ହୋଇ ଯଥେଚ୍ଛାଚାର କରିବାକୁ ଯାଇ
ମୂଳକ୍ରମ ଭାଙ୍ଗି ଦେଇଛନ୍ତି ଏବଂ ପ୍ରତ୍ୟେକ ପଙ୍‌କ୍ତିକୁ ୧୪ ଅକ୍ଷର
କରିଦେବା ଫଳରେ ମହା କବିଙ୍କର ସ୍ୱାତନ୍ତ୍ର୍ୟ ଉପରେ ତଥା
ଜାତୀୟ ସାହିତ୍ୟ ଉପରେ ବଜ୍ରପାତ କରି ଅଛନ୍ତି ।

ଗୋଟିଏ ବର୍ଣ୍ଣନା କରିବାକୁ ଯାଇ କିମ୍ବା ଗୋଟିଏ ବଂଶର
ବିଶେଷତ୍ୱ ଓ ମର୍ଯ୍ୟାଦା ପ୍ରକଟନ କରିବାକୁ ଯାଇ ମହାକବି ଭିନ୍ନ
ଭିନ୍ନ ଭାବରେ ସେହି ପ୍ରସଙ୍ଗର ପ୍ରତ୍ୟେକ ପର୍ଯ୍ୟାୟ ଓ ପ୍ରତ୍ୟେକ
ଅଂଶ ବିଶେଷକୁ ପୂର୍ଣ୍ଣାଙ୍ଗ ବର୍ଣ୍ଣନା କରିଛନ୍ତି । ଫଳରେ ବର୍ଣ୍ଣିତ
ବିଷୟ ଗୁଡ଼ିକର ସମ୍ବନ୍ଧରେ ସନ୍ଦେହ ଜାତ ହୋଇ ନ ପାରେ ।
ଅତି ଅଶିକ୍ଷିତ ଅରସିକ ମଧ୍ୟ ମହାଭାରତର ଆବୃତ୍ତି ହେଲାବେଳେ
ସ୍ୱତଃ ଆକୃଷ୍ଟ ହୋଇପଡ଼େ ଅବାରିତ ଭାବରେ ଏବଂ ବିଭିନ୍ନ

ବିଷୟଗୁଡ଼ିକର ପରିବେଷଣ ତାଙ୍କୁ ଏକାଧାରରେ ଆନନ୍ଦ ଓ ବିସ୍ମୟରେ ତନ୍ମୟ କରିଦିଏ । ସର୍ବଶରୀରବିନୋଦନ ସାମଗ୍ରୀଗୁଡ଼ିକ ସୁଚିନ୍ତିତ ସୂତ୍ରରେ ସଜ୍ଜିତ ହୋଇଥିବାରୁ ନିରାନନ୍ଦ ସୃଷ୍ଟି ଲାଗି ଅବକାଶ ମିଳେନା ଏବଂ ମହାଭାରତୀୟ ଘଟଣାବଳୀ ଓ ରହସ୍ୟପୂର୍ଣ୍ଣ ତତ୍ତ୍ୱଗୁଡ଼ିକ ଧାରାବାହିକ ଭାବରେ ଆଲୋଚିତ ଓ ପଠିତ ହେଉଥିବେଳେ ବିଶୃଙ୍ଖଳ ଓ ବିପର୍ଯ୍ୟସ୍ତ ଜୀବନରେ ପରିବର୍ତ୍ତନ ହୋଇପଡ଼େ ସ୍ୱାଭାବିକ ଭାବରେ । ମହାପୁରାଣର ସର୍ବକଲ୍ୟାଣକର ଉତ୍କର୍ଷ ଓ ସରସତା ପଦେପଦେ ପ୍ରତ୍ୟେକ ପ୍ରାଣୀକୁ ଅଧିକାର କରି ବସେ ଏବଂ ଶିକ୍ଷା ସଂସ୍କୃତି, ଆଦର୍ଶ, ନୀତି ପ୍ରତ୍ୟେକଙ୍କ ଜୀବନର ଗଠନ ଦିଗରେ ସାହାଯ୍ୟ କରେ । ଶ୍ରୀବ୍ୟାସମୁନି ଏହି ଦୃଷ୍ଟିରୁ ନିଜର କଳ୍ପନାର ସ୍ୱାତନ୍ତ୍ର୍ୟ ବଳରେ ଜାତିର ଚିରନମସ୍ୟ ଶିକ୍ଷକ, ସଂସ୍କାରକ, ଧର୍ମପ୍ରଚାରକ, ଆଦର୍ଶ ପ୍ରସାରକ ଓ ଜୀବନ ନିୟାମକ ଭାବରେ ଯୁଗେ ଯୁଗେ ଦଣ୍ଡାୟମାନ ହୋଇ ରହିବେ ।

ଆଦର୍ଶ ଚରିତାବଳୀ ବଳରେ ମହାକବି ମାନବଜାତିର ମର୍ଯ୍ୟାଦା ଓ ସଂସ୍କାର ଅକ୍ଷୁଣ୍ଣ ରଖିବା ଲାଗି ବ୍ୟାକୁଳ ହୋଇ ଅଛନ୍ତି । ଆଦର୍ଶ ନରନାରୀ ସମାଜ, ଜାତି ଓ ଦେଶର ଯେଉଁ ନୈତିକ ସଂସ୍କାର ଅନୁଧ୍ୟାନ କରନ୍ତି ତାହାହିଁ ଜୀବନର ଏକମାତ୍ର ଲକ୍ଷ୍ୟ ବୋଲି ଅବଧାରଣ କରିଛନ୍ତି ସେ । ସେଇମାନଙ୍କ ଯୋଗେ ପୃଥିବୀ ସ୍ୱର୍ଗରେ ପରିଣତ ହୁଏ କାରଣ ସେମାନଙ୍କର ବିଜ୍ଞାନ ଓ ମନୋବୃତ୍ତିର ଉତ୍କର୍ଷ ସମ୍ପାଦିତ ହୁଏ ବାସ୍ତବ କର୍ମଜୀବନରେ ଏବଂ ଅନ୍ୟାୟ, ସ୍ୱାର୍ଥ, ଦ୍ୱେଷ, ହିଂସା, ଲୋଭ, ମୋହ, ମାତ୍ସର୍ଯ୍ୟ, ଅସଦାଚାର ପ୍ରଭୃତିର ଉତ୍ପୀଡ଼ନରେ ଆଦର୍ଶ ଚରିତର ମହତ୍ତ୍ୱ ପ୍ରତିପାଦିତ ହୋଇଥାଏ । ସଂଘର୍ଷ, ବାତାବରଣ ଓ କୁସଂସ୍କାର ଭିତରେ ହିଁ ଜୀବନର ମହନୀୟତା ଓ କମନୀୟତା


Digitized by srujan ka@gmail.com

ସ୍ପଷ୍ଟ ହୋଇପଡ଼େ । ବିଧାତାର ବିଧାନ ତେଣୁ 'ସୁ' ଓ 'କୁ' କୁଇଟି ମଧ୍ୟରେ ଜୀବନକୁ ପଦେ ପଦେ ପରୀକ୍ଷା କରି ଅସତ୍-ପନ୍ଥାର ଅପକର୍ଷ ଓ ସନ୍ମାର୍ଗର ଉତ୍କର୍ଷରେ ପ୍ରମାଣ କରିଦେଇଥାଏ । ରାଜର୍ଷି ଜନକ, ଧୃତରାଷ୍ଟ୍ର, ମହାରଥୀ ଭୀଷ୍ମ, ଧର୍ମବୀର ଯୁଧିଷ୍ଠିର, କର୍ମବୀର ଅର୍ଜ୍ଜୁନ, ମାନୀ ଦୁର୍ଯ୍ୟୋଧନ, ମଦୋଦ୍ଧତ ଦୁଃଶାସନ, ମନ୍ଦମତି ଶକୁନି ପ୍ରଭୃତି ଏବଂ ଗାନ୍ଧାରୀ, ଦମୟନ୍ତୀ ଓ ଦ୍ରୌପଦୀ ପ୍ରଭୃତି ବହୁବିଧ ଚରିତ୍ରଗୁଡ଼ିକ ଏହି ବିଧାତା—ଅଭିପ୍ରେତ ପଦ୍ଧତିରେ ପରୀକ୍ଷିତ ହୋଇଛନ୍ତି । ସେମାନଙ୍କ ରହସ୍ୟମୟ ଜୀବନ ଯାତ୍ରା ହିଁ ମାନବକୁ ଶିକ୍ଷା ଓ ସଂସ୍କାର ପଥରେ ଜାଗରୁକ କରିଦେଇଛନ୍ତି । ମହାପୁରାଣ ସମ୍ବଳିତ ମହାଶିକ୍ଷା ନୀତିର ଚିରନ୍ତନ ଲକ୍ଷ୍ୟ ବାସ୍ତବ ସଭ୍ୟତା ଓ ପ୍ରଗତି-ଶୀଳତାର ଅଭିବୃଦ୍ଧି ସାଧନ କରିବା ଏବଂ ପଦେ ପଦେ ଜୀବନକୁ ଚେତାଇ ଦେଇ ଆଦର୍ଶ ପ୍ରତି ଆକର୍ଷଣ କରିବା । ଶର ଶଯ୍ୟା ଉପରେ ଶୟନ କରି ମହାଗୁରୁ ମହାରଥୀ ଭୀଷ୍ମ ନୈତିକ ଜୀବନର ଶୁଦ୍ଧ ପରମ୍ପରା ରକ୍ଷା କରିବା ଲାଗି ଏବଂ ସୁଶାସନର ବାସ୍ତବତା ଉପଲବ୍ଧି କରିବା ଲାଗି ଯୁଧିଷ୍ଠିରଙ୍କୁ ରାଜନୀତି ଉପଦେଶ ଦେଇଛନ୍ତି,—

ଅର୍ଥନୀତି—

ରାଜ୍ୟ କର ବାବୁ ଏବେ ଧର୍ମ ପ୍ରତିପାଳି,
ଅଧର୍ମ କଲେ ସହିବ ନାହିଁ ମହୀମଣ୍ଡଳୀ ।
ଏପରି ପ୍ରଜା ପାଳିବୁ, ନୋହିବେ କେ ଦୁଃଖୀ,
ପ୍ରଜାଙ୍କ ସୁଖରେ ସିନା ରାଜା ହୁଏ ସୁଖୀ ।
ନ୍ୟାୟେ ପ୍ରଜାଙ୍କୁ ପାଳିଲେ ଇନ୍ଦ୍ର କରେ ବୃଷ୍ଟି,
ରାଜାର ପାଳନେ ସିନା ରକ୍ଷା ହୁଏ ସୃଷ୍ଟି ।

ଦୋଷାଦୋଷ ବିଚାରିଣ ଦଣ୍ଡ ଦେଉଥିବୁ,
ଦେଖ ତାହା ଦୋଷ ହେବେ ପ୍ରଜାଏବେ ବାବୁ ।
ଗୁରୁ ବରଗି ବୁଝିବୁ ବଧ୍ୟ କ ଅବଧ୍ୟ,
ଅନ୍ୟାୟ କରଲେ ଶିର ପକାଇବୁ ଛେଦ ।
ଦୋଷୀକୁ ଦଣ୍ଡିଲେ ତୋର ନ ହୋଇବ ଦୋଷ,
ତେବେ ନିଶ୍ଚଳରେ ଲକ୍ଷ୍ମୀ ଥିବେ ତୋର ଦେଶ ।
ପ୍ରଜାଙ୍କ ମୁଖରୁ ଯାର ଶୁଭେସାଧୁ ଧ୍ୱନି,
ଯମ ଦଣ୍ଡି ନ ପାରଇ ତାକୁ ପାଶ ଘେନି ।
ମନ୍ତ୍ରୀ ପଣେ ସୁଚତୁର ଲୋକକୁ ରଖିବୁ,
ତାର ପରାମର୍ଶ ଘେନି କାର୍ଯ୍ୟ କରୁଥିବୁ ।
× × ×
ପଣ୍ଡିତ ମୁଖ୍ୟ ଶୁଣିବୁ ପୁରାଣର କଥା,
ସ୍ତ୍ରୀ ଲୋକଙ୍କ ବିଶ୍ୱାସ ବାବୁ ନ ଯିବୁ ସର୍ବଥା ।
ଦେବତା ବ୍ରାହ୍ମଣେ ନିତ୍ୟ କରୁଥିବୁ ପୂଜା,
ପାରିଧିକୁ ଏକାବେଳେ ନ ତେଜିବୁ ରାଜା ।
× × ×
ପରଦାରା ପରଦ୍ରବ୍ୟ ବଳେ ନ ହରିବୁ,
ପ୍ରାଣୀ ଶରଣ ପଶିଲେ ତାହାକୁ ରଖିବୁ ।
କୃଷି କର୍ମକାରୀ ଜନେ ନ ଦଣ୍ଡିବୁ ଧନ,
ଗୋଚର ନିମନ୍ତେ ଛାଡଦେବୁ ବହୁ ସ୍ଥାନ ।
ଗୁଣୀଗୁଣ ଜାଣି ବାବୁ କରୁଥିବୁ ପୂଜା,
କବିମାନଙ୍କୁ କୃପଣ ନ ହୋଇବୁ ରାଜା ।

ଶାନ୍ତିପର୍ବ

ଗୃହ ପ୍ରେଷଣ ଭେଦ ନୀତର ଗୋଟିଏ ଅପରିହାର୍ଯ୍ୟ ଅଙ୍ଗ । ଏହି ପର୍ଯ୍ୟାୟରେ ଭାରବୀ ବନେଚର ମୁଖରେ କହୁଛନ୍ତି—

କିମ୍ବାସ୍ତୁ ଯୁକ୍ତେ ନ୍ୃପଗୃହ ଚକ୍ଷୁଷଃ,
ନ ବଞ୍ଚନୀୟା ପ୍ରଭବୋଽନୁଜୀବଭିଃ
ଅତୋଽର୍ହସି କ୍ଷନ୍ତୁ ମସାଧୁ ସାଧୁ ବା
ହିତଂ ମନୋହାରି ଚ ଦୁର୍ଲଭଂ ବଚଃ ।

ଏବଂ ମନ୍ତ୍ରୀ ପରାମର୍ଶ ଦ୍ୱାରା ତଥା ସୁଶାସନ ସମ୍ବନ୍ଧରେ ଲେଖିଛନ୍ତି—

ସ କିଂ ସଖା ସାଧୁ ନ ଶାସ୍ତି ଯୋଽଧିପଂ
ହିତାନ୍ନ ଯଃ ସଂ ଶୃଣୁତେ ସକିଂପ୍ରଭୁଃ
ସଦାନୁକୂଲେ ଷ୍ୱିହ କୁର୍ବତେ ରତିଂ
ନୃପେଷ୍ୱମାତ୍ୟେଷୁ ଚ ସର୍ବ ସମ୍ପଦଃ ।

ଅର୍ଥନୀତ—

ବଂଶ ହାତରେ ଧରିବୁ ଏକ ନଳ କାଠି,
ପଞ୍ଚବଂଶ ଗୁଣ୍ଡେ ମାଣ, ବଂଶମାଣେ ବାଟି ।
ବାଟିକରେ ଏକ ଶନା ନେଉଥିଲେ ସଞ୍ଜା,
ପ୍ରଜା ବୋଲିବେ ଦୀର୍ଘାୟୁ ହେଉ ଅମ ରଜା ।

(ଶାନ୍ତିପର୍ବ)

× × ×

ଚଟୁଳ ଚମତ୍କାର ଭାଷା ପ୍ରୟୋଗ ମାଧ୍ୟମରେ ଉପଦେଶାତ୍ମକ ନୀତ—

ଏକା ଗୁରୁକେ ଅନେକ ବିଦ୍ୟା ଶିଖିସାଧି ।
ଏକା ମହଉଷଧି ଯେସନେ ନାଶ କରେ ବ୍ୟାଧି ।

ଅପାର ଚାଉଳ ଗଲେ ନ ବଞ୍ଚିଇ ଦେହୀ,
ଅପାର ଅନ୍ନ ଖାଇଲେ ନ ହୁଅଇ ଯୋଗୀ ।
ଅପାର ବୁଦ୍ଧିରେ ଜାଣ କାର୍ଯ୍ୟ ହୁଏ ହାନି,
ଅପାର ମନ୍ତ୍ର ଘେନିଲେ ହୁଅଇ ଅଜ୍ଞାନୀ ।
ଅପାର ସ୍ତ୍ରୀ ହରିଲେ ଆୟୁ କ୍ଷୟ ଯାଇ,
ଅପାର ହିଂସାରେ ଦେହ ପତନ ହୁଅଇ ।
ଅପାର ଲୋଭେ ଇନ୍ଦ୍ରୁ ନ ପାରନ୍ତି ମାରି,
ଅପାର ତୀର୍ଥ କଲେ ଯେ ହୁଏ ଦେଶାନ୍ତରୀ ।
(ଆଦ୍ୟ ପର୍ବ)

× × ×

ଆଦର୍ଶ ଜୀବନ ଯାତ୍ରା ପଥରେ ବାସ୍ତବିକ ସର୍ବମତ୍ୟନ୍ତ ଗର୍ହିତ ନୀତ ପଦେ ପଦେ ପାଳନୀୟ ।

ଯୋଗୀ ପକ୍ଷେ ଧର୍ମନୀତି—

କର୍ମଫଳ ଆଶା ତେଜି ଶାସ୍ତ୍ରକୁ ଯେ ଘେନି,
କର୍ମ କରିଲେ ସନ୍ନ୍ୟାସୀ ଯୋଗୀ ବୋଲି ମାନି ।
ଯାଗ, ଜଳ କାର୍ଯ୍ୟ ଯେତୁ କେବଳ ଛାଡ଼ିଲି,
ତାହାକୁ ସନ୍ୟାସୀ ବୋଲି ଅର୍ଜୁନ ନ କହି ।
ଯେ ଅବା ଫଳ ସଂକଳ୍ପ ତ୍ୟାଗ ନ କରିବ,
ଯୋଗୀ ବୋଲିଣ ତାହାକୁ କିଏ ବା କହିବ ।
ମନ ଗୋଟିକ ଯାହାର ବଶ ହୋଇନାହିଁ,
ଜଗତରେ ତାହାଠାରୁ ଶତ୍ରୁ କାହିଁ ନାହିଁ ।
ଶୀତ ଉଷ୍ଣ ସୁଖ ଦୁଃଖ ମାନ ଅନାଦାର,
ରାଗ ଦ୍ୱେଷ ବିବର୍ଜିତ କରନ୍ତି ଯେ ନର ।

ଜ୍ଞାନ ବିଜ୍ଞାନରେ ଯେହୁ ତୃପ୍ତି ଲଭିବାର
ମାଟି, ସୁନା, ପଥରକୁ ସମାନ ଦେଖିବ ।
ଏସନ ଯେଉଁ ମାନବ ଜିତେନ୍ଦ୍ରିୟ ହୁଏ
ଯୋଗାରୂଢ଼ ଯୋଗୀ ସେହି ଜଗତେ ବୋଲାଏ ।
ସଂଯମ କରଇ ଦେହ ଶଉ ଏକା ହୋଇ
କେଉଁଣସି ବିଷୟରେ ମନ ନ ବଳାଇ ।
ମନ ଯଦ୍ୟପି ବିଷୟେ ହେବ ଉପଗତ
ଆତ୍ମାକୁ ଆଣି ତାହାକୁ କରିବ ଅଯୁକ୍ତ ।
ଯୋଗୀ ଯେହୁ ସବୁଙ୍କର ଜାଣେ ଏକ ଆତ୍ମା
ମୋହର ଆତ୍ମା ସମାନ ତାହାଙ୍କର ଆତ୍ମା ।
ଯେଉଁ ଲୋକ ସବୁଠାରେ ମୋତେ ଏକା ଦେଖେ
ସବୁ ମୋ ଦେହରେ ଅଛୁ ବୋଲିଣ ନିରେଖେ ।
ମୁହିଁ ସେ ଲୋକକୁ କେବେ ନୁହଇ ଅଦୃଶ୍ୟ
ମୋହର ମଧ୍ୟ ସେ ଲୋକ ନୁହଇ ଅଦୃଶ୍ୟ ।
ମନ ବଶ ହୋଇଅଛି ଯାହାର ଅର୍ଜୁନ
ଯୋଗ ତାହାର ସର୍ବଦା ଅଟଇ ଅଧୀନ ।

(ଭୀଷ୍ମ ପର୍ବ)

ଗୀତ, ଜୀବନର ଏକମାତ୍ର ସମ୍ବଳ ଏବଂ ଗୀତାନିସ୍ୟନ୍ଦିତ ଜୀବନ ହିଁ ଜୀବନ ପଦବାଚ୍ୟ । ମହାକବି ତେଣୁ ରଚନାର ବହୁ ସ୍ଥଳରେ ବହୁ ଚରିତ୍ର ମୁଖରେ ସ୍ୱକୀୟ ଆଦର୍ଶାନୁପ୍ରାଣିତ ହୃଦୟର ଅଭିବ୍ୟକ୍ତି କରି ମାନବଜାତିର କଲ୍ୟାଣକଳ୍ପେ ଶୁଦ୍ଧ ସତ୍ୟନୀତି, ଧର୍ମନୀତିଗୁଡ଼ିକର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିଅଛନ୍ତି । ଜାତିର ଓ ସାଧାରଣ ମାନବର ଆଦର୍ଶ ଶିକ୍ଷକ ଓ ସଂସ୍କାରକ ଭାବରେ ।


Digitized by srujan ka@gmail.com

ତାଙ୍କର ଉନ୍ନତ ଜୀବନର ଦୃଷ୍ଟିକୋଣ ସେହି ଦିଗରେ ବିଶେଷ ପରିମାଣରେ ଅଭିବ୍ୟକ୍ତ ହୋଇଛି ଏବଂ ବିଭିନ୍ନ ପର୍ବର ପ୍ରସଙ୍ଗ ବହୁଳ ଚିତ୍ରଣ ଭିତରେ ଏହି ସତ୍ୟ ନୀତି ନିହିତ ଜୀବନର ମୂଳମନ୍ତ୍ର ପ୍ରତିଫଳିତ ହୋଇଛି । ସେଗୁଡ଼ିକରେ ପୁଣି ପରିପୂର୍ଣ୍ଣ ହୋଇଛି ଗଭୀର ମନସ୍ତତ୍ତ୍ୱ ଓ ଦୈନନ୍ଦିନ ଜୀବନ ପ୍ରବାହର ବାସ୍ତବତା । ମହାକବି ଶୁଦ୍ଧ ସାଧକଭାବରେ ଯଶ ଅର୍ଜନ କରିବାକୁ ପ୍ରୟାସୀ ହୋଇ ନାହାନ୍ତି । ବସ୍ତୁତଃ ତାଙ୍କର ସିଦ୍ଧ ଜୀବନ ଓ ଶୁଦ୍ଧ ହୃଦୟ ସ୍ୱାଧୀନ-ଭାବରେ ସତ୍‌ପନ୍ଥା ନିର୍ଦ୍ଦେଶ କରିଦେଇଛି ଓ ଏକନିଷ୍ଠ ବିଶ୍ୱାସ-ବଦ୍ଧ କର୍ମପରମ୍ପରା ହିଁ ସଂସାର ଯାତ୍ରାପଥରେ ଏକମାତ୍ର ପାଥେୟ ଏହି ସତ୍ୟ ଦୃଢ଼ଭାବରେ ଘୋଷଣା କରିଛି ।

## ମହାପୁରାଣର ସରସତା ସମ୍ବନ୍ଧ ବର୍ଣ୍ଣନାବଳୀ

୧ । ଯୁଧିଷ୍ଠିରଙ୍କ ଜନ୍ମ ପ୍ରସଙ୍ଗରେ ମହାପୁରୁଷର ଲକ୍ଷଣ—

ସୁକୁମାର ଅଙ୍ଗ ଶୁଦ୍ଧ ସ୍ଫଟିକ ପରାୟ
ଅପୂର୍ବ ସୁନ୍ଦର ଦିବ୍ୟ ଅକଳଙ୍କକାୟ ।
ଶିଖଣ୍ଡି ଭାଲେ ଅନୂଲ୍ୟରେଖା ଦଶେ ଫୁଟି,
ତିଳକୁସୁମ ନାସିକା କଳ୍ପ ପ୍ରାୟ ଦୃଷ୍ଟି ।
ସୁଲକ୍ଷଣ ନେତ୍ର ବେନି ଭ୍ରୂଲତା ଅଧର,
ସୁଘଟଣ ବକ୍ଷସ୍ଥଳ ଗୋଟି ଯେ ବିସ୍ତାର ।
ବୃଷତୁଲ୍ୟ ସ୍କନ୍ଧ ଗଜରପୃଷ୍ଠତୁଲ୍ୟ ଠାଣି,
ବାହୁ ଦୁଇଗୋଟି ପଦ୍ମମୃଣାଳ କି ଜାଣି ।
ବିକଚ ପଦ୍ମକୁ ଜିଣି ବେନି କରତଳ,
ଅସ୍ଫୁଟ ଚମ୍ପକ ଜିଣି ଶୋଭିତ ଅଙ୍ଗୁଳ ।
ବିକଶିତ ଦଶମୁଖ ଫୁଲପାଖୁଡ଼ାକି,
ଅଜାନୁ ବେନି ବାହୁକି ଭୂଷଣ ପୃଥ୍ୱୀକି ।

ପୋହଳାର ରେଖା ଜିଣି ପାଦର ଅଙ୍ଗୁଷ୍ଠି,
ସେବତୀ ପାଖୁଡ଼ା ଜିଣି ଦଶ ନଖ ଫୁଟି ।
ବଜ୍ରମ ଶୋଭା ଧଇଲ ବେନି ଜାନୁ ଠାଣି,
ବେନିପାଦ କାନ୍ତି ରକ୍ତ କୁମୁଦ କି ଜାଣି ।
ବିପ୍ରଙ୍କର ପାଦ ତଳପାରେ ପଦ୍ମ ଚିହ୍ନ,
କରତଳେ ଶଙ୍ଖ ପଦ୍ମ ଚିହ୍ନ ଯେ ଗୋପନ ।
ଶରଦ ଚନ୍ଦ୍ରମା ପ୍ରାୟ ଶୋଭିତ ବଦନ,
ଯେଉଁ ମହାତ୍ମା ଭେଦିଲା ଶୂନ୍ୟରେ ଆସନ ।
ମୁକୁନ୍ଦମନ୍ତ ପୁରୁଷ ଦ୍ୱାପର ଯୁଗକୁ,
ପ୍ରତ୍ୟକ୍ଷେ ସେ ନିରଞ୍ଜନ ଜାତ ସଭାବକୁ । (ଆଦ୍ୟପର୍ବ)

ଏଗୁଡ଼ିକରେ ଅଳଙ୍କାର ବିନିବେଶ କେଡ଼େ ସରସ ଓ ସୁନ୍ଦର ହୋଇଅଛି ଏବଂ ଭାଷାର ତଦନୁରୂପ ଭଙ୍ଗୀ ଯୋଜନା ଦୃଷ୍ଟିରୁ କବିର ସୁବୋଧ ଓ ସାବଲୀଳ ତାହା ସହଜରେ ଅନୁମେୟ ।

୨ । ବନ ବର୍ଣ୍ଣନାଃ—ହରିଣମୁଖ ବନ,—
ଦେଖନ୍ତି ସେ ହରିଣମୁଖ ବନ ହିଁ ବିଶାଳ,
ଅବସନ୍ତରେ ବସନ୍ତ ବହେ ଅନୁକୂଳ
ଆମ୍ବ ପଣସ କଦଳୀ ଚମ୍ପା ନାରିକେଳ,
ଜମ୍ବୁ ଜମ୍ବିଲ ନାରଙ୍ଗ ଆଦି ପକ୍ୱଫଳ ।
ଯେତେ ଫଳପୁଷ୍ପ ତହିଁ ଲେଖିଲେହିଁ ପାରି,
ଯାହା ମନେ ବାଞ୍ଛା କର ତାହା ତହିଁ ଥାଇ । ଇତ୍ୟାଦି ।
(ଆଦ୍ୟପର୍ବ)

ଦ୍ରୌପଦୀ ସ୍ୱୟମ୍ବର ସଭାରେ ବ୍ରାହ୍ମଣ ବେଶଧାରୀ ପାଣ୍ଡବମାନଙ୍କର ବର୍ଣ୍ଣନାରେ ମହାକବିଙ୍କର ସଂସ୍କାର ଗତ ଦିବ୍ୟ ଦୃଷ୍ଟି ଯେଉଁ ନିଖୁଣ ଚିତ୍ର ଦେଇଛି ତାହା ଉପର ଅର୍ଥ ଧର୍ମାନୁକୂଳ ଓ ଶାସ୍ତ୍ରୋଚିତ ସ୍ପଷ୍ଟ ଜଣାପଡ଼େ—

ବ୍ରାହ୍ମଣ ରୂପ ଧଇଲେ ତହୁଁ ପଞ୍ଚବୀରେ,
ନିକଛ କରି ବସନ ପିନ୍ଧିଲେ କଟିରେ ।
ନବଗୁଣର ପଇତା କନ୍ଧରେ ଉତ୍ତରୀ,
କାଖରେ ଜାକିଲେ ମନ୍ତ୍ରପୋଥି ବାନ୍ଧିକରି ।
ଦ୍ୱାଦଶ ଲକ୍ଷଣ ତିଳା ଶ୍ରୀବତ୍ସର ଚିହ୍ନ,
ମୁଖେ ବେଦବାଣି ଘୋଷି ସ୍ୱରୂପ ବ୍ରାହ୍ମଣ ।
କକ୍ଷେ ତାଳପତ୍ର ଛତା ହସ୍ତରେ ପ୍ରୋକ୍ଷଣୀ,
ସମସ୍ତଙ୍କ କାୟା ଦିଶେ ତାମ୍ରବର୍ଣ୍ଣ ଜିଣି ।
ଗୋପନ ଦୋହରି ଅଗ୍ନି ହସ୍ତେ କୁଶ ବିଣ୍ଡ,
ଅଣ୍ଟାରେ ବାନ୍ଧିଅଛନ୍ତି ମେଖଳା ଦଣ୍ଡ ।
ଗଣ୍ଡୁ ପୀଢ଼ା ତମ୍ବାପାତ୍ର କରେ ଜପାମାଳ,
କଣ୍ଠରେ ରୁଦ୍ରାକ୍ଷମାଳା ପଡ଼ିଛି କେବଳ ।
ବ୍ରାହ୍ମଣ ସଭାରେ ବିଜେ କଲେ ପଞ୍ଚବୀରେ,
ପ୍ରତ୍ୟକ୍ଷେ କି ବ୍ରହ୍ମ ଇନ୍ଦ୍ର ସୂର୍ଯ୍ୟ ହରିହରେ ।

ଭାରତୀୟ ସ୍ମୃତି ସଂହିତାଗୁଡ଼ିକରେ ବ୍ରହ୍ମଚାରୀର ବର୍ଣ୍ଣନା ସଙ୍ଗେ ସମାନ୍ତରାଳଭାବରେ ଗତି କରିଛି ଏହି ଚିତ୍ରଣର ଚମତ୍କାରିତା ଏବଂ ଏହି ସଭାକୁ ଭାରତ ଓ ଭାରତ ବାହାରୁ ଯେତେ ରଜା ମହାରଜା ଓ କ୍ଷତ୍ରିୟ ସାମନ୍ତ ନିମନ୍ତ୍ରିତ ହୋଇ ଯଥୋଚିତ ଆସନରେ ଆସୀନ ହୋଇଅଛନ୍ତି ସେମାନଙ୍କର ବେଶ, ଓ ପ୍ରତାପ ଜୀବନ୍ତ ହୋଇଛି ଶାରଳାଙ୍କ ଲେଖନୀ ବଳରେ ।


Digitized by srujan ka@gmail.com

ନାର୍ଟର, କୁରୁଜାଙ୍ଗଳ, ମଦ୍ର, ଗାନ୍ଧାର, ନୈଷଧ, ମଗଧ, ବିଦର୍ଭ, କାଶୀ, କଳିଙ୍ଗ, ଉଡ଼ଙ୍ଗ, ବୈଶ୍ୱାନର, ଚୌହାଣ, ବଙ୍ଗ, ମଧ୍ୟ, ମତ୍ସ୍ୟ, ଭଞ୍ଜ, ମହ୍ଲାର, ମଲ୍ଲ, କାଞ୍ଚିସ, କୁନ୍ତସଷ୍ଟ, ବାରସ୍ୱତୀ, ପାରିଜାତ, ଭୋଜକଟ, ବାଡ଼ଙ୍ଗ, ଅନୁଭଗୀ, ଚଣ୍ଡୀହର, ଭିଲଭଲ, ସାଙ୍କଲ୍ୟ, ଜ୍ୟୋତିଷପୁର, ଖନ୍ନଖନା, ହିରଣ୍ୟପୁର, ଉଜ୍ଜଙ୍ଗପୁର, ଭୈରବ, ଜେନାବଳୀ, ବାଗ୍ଲ, କର୍ଣ୍ଣାଟ, ଯାଜପୁର, ଖଡ଼ଦପୁର, ଚେଦୀ, ରେଦୀ, କାଞ୍ଚୀ, କେଶ ୟ, କୁଶମଣ୍ଡଳ, ମଧୁବନ, ମରୁତ ମରୁତ ଦେଶ, ସୌରାଷ୍ଟ୍ର, ବର୍ଦ୍ଧମାନ, ଉତ୍ତର ଓ ପଶ୍ଚିମକୋଶଳ, ସୁରଭୀ ଦକ୍ଷିଣକୋଶଳ, ପାଟଣା, ମଳୟ, ନାହର, ରୌବତ, ନାରସ୍ତପାଟଣା, କମଳପାଟଣା, ଶଙ୍ଖପୁର ପ୍ରଭୃତିର ପ୍ରଶସ୍ତି ସଙ୍ଗେ ସଙ୍ଗେ ତତ୍ରାଗତ ରାଜାମାନଙ୍କର ପ୍ରତାପଶ୍ରୀ ବହୁ ଛନ୍ଦରେ ବର୍ଣ୍ଣିତ ହୋଇଅଛି । ଏହି ପର୍ଯ୍ୟାୟରେ ବର୍ଣ୍ଣନା ଚନ୍ଦ୍ରଲତା ଉପଭୋଗ୍ୟ—

କଳିଙ୍ଗ ଉଡ଼ଙ୍ଗ ବଙ୍ଗ ତୈଲଙ୍ଗ ଅବର,
ଚୂଡ଼ଙ୍ଗ ଉଡ଼ଙ୍ଗ ଅଙ୍ଗ ଦେଶ ନୃପବର ।
ଖଗ ଦେଶ କୀରଦେଶ ଭୋଜକଟ ଦେଶ,
ମୋଟ ଭୋଟ କର୍ଣ୍ଣାଟ ଏ ଦେଶ ହିଁ ବିଶେଷ ।
ମନ୍ଦାର ଦେଶ ତାହଲ ଦେଶ କାକପାଣି,
କ୍ଷୀରଦେଶ ପଦଦେଶ ମାଳବ ଏ ପୁଣି ।
କଜ୍ଞିକ କାନ୍ୟକୁବ୍ଜ ଦେଶ ଯେ ଅବର,
ବାରସ୍ୱତୀ ବୃନ୍ଦାରକ କାଞ୍ଚିସ ମଣ୍ଡଳ ।

ଭାନୁମତୀ ସ୍ୱୟମ୍ବର ବେଳେ ଦେଶ ବିଦେଶର ବର୍ଣ୍ଣନା ହୋଇଅଛି ଠିକ୍ ଏହି କ୍ରମରେ । ସ୍ୱୟମ୍ବର, ରାଜସଭା, ମନ୍ତ୍ରଣା ପ୍ରଭୃତିରେ ସମସ୍ତ ମର୍ଯ୍ୟାଦାସମ୍ପନ୍ନ ଘଟଣା ଆର୍ଯ୍ୟସଂସ୍କାର ଦୃଷ୍ଟିରୁ

ବର୍ଣ୍ଣିତ ହୋଇଅଛି । ଅତଥି ସତ୍କାର କୁଶଳ ପ୍ରଶ୍ନ, ସେବା, ତ୍ୟାଗ ପ୍ରଭୃତ ଅର୍ଥ ସୂଚକ ଧର୍ମଗୁଡ଼ିକ ମହାଭାରତର ପଦ୍ୟ ରଚନା କୌଶଳରେ ଅତ ସରସ ଓ ତଦାତ୍ମ୍ୟାନ୍ତନ ଅର୍ଥ ସଭ୍ୟତାର ପରିଚାୟକ । ପ୍ରଥମ ସମ୍ଭାଷଣରେ ବନବାସ ଜୀବନରେ ପୃଥିଷ୍ଠିରଙ୍କ,—

ନାରଦ ବୋଲନ୍ତି ଯେମେ ଅଛ ତ ସକଳେ,
ସୋଦରମାନେ ତୋହର ଅଛନ୍ତି ନା ଭଲେ ।
ନାହିଁ ତ ଦାନବଙ୍କର ଭୟ ଏ ଠାବକୁ
ଯେମେ କୁଶଳେ ଅଛନା ପଚାରେ ତୁମକୁ ।
ଏବଣି ଦୁଃଖକୁ ତୁମେ ନ କରବ ଚିତ୍ତ
ଯେମେ ଜାୟା ଘେନିଅଛ ତୁମେ ନା ବରତ ।

ଶରୀର ତତ୍ତ୍ୱ—ଶରୀର ତତ୍ତ୍ୱ ବର୍ଣ୍ଣନାରେ ଉତ୍କଳୀୟ ଗତାନୁଗତିକ ବୈଷ୍ଣବଧର୍ମର ମହତ୍ତ୍ୱ ସାରଳାଙ୍କ ରଚନାବଳୀରେ ପ୍ରକାଶିତ ହୋଇଅଛି ବଡ ସରସ ଓ ସୁବୋଧ ଭାବରେ । ପିଣ୍ଡ ବ୍ରହ୍ମାଣ୍ଡତତ୍ତ୍ୱ ସମ୍ବନ୍ଧରେ ବହୁ ପରବର୍ତ୍ତୀ କବିମାନେ ରଚନା କରି ବୈଷ୍ଣବ ସାହିତ୍ୟର ଶ୍ରୀବର୍ଦ୍ଧନ କରିଅଛନ୍ତି । ଅଚ୍ୟୁତ, ଯଶୋବନ୍ତ ଜଗନ୍ନାଥ ବଳରାମ, ଦୀନକୃଷ୍ଣ ପ୍ରଭୃତଙ୍କର କ୍ଷୁଦ୍ର ବୃହତ୍ ରଚନା-ବଳୀରେ ତତ୍ତ୍ୱବୋଧ, ମନବୋଧ, ଜ୍ଞାନବୋଧ, ପ୍ରଭୃତ ବହୁ ଛନ୍ଦରେ ଏହାର ଦୃଷ୍ଟାନ୍ତ ବହୁଳ ପରିଲକ୍ଷିତ ହୁଏ । ଏହି ବୈଷ୍ଣବ କବିମାନଙ୍କର ଭଜନ ଓ ସ୍ତୁତି ସ୍ତବ ଗୁଡ଼ିକରେ ଶରୀର ତତ୍ତ୍ୱ, ଆତ୍ମତତ୍ତ୍ୱ, ଜ୍ଞାନତତ୍ତ୍ୱ ଓ ବ୍ରହ୍ମତତ୍ତ୍ୱ ବିଭିନ୍ନ ପ୍ରସଙ୍ଗରେ ଅଲୋଚିତ ହୋଇଅଛି । ସାରଳାଙ୍କର ବନପର୍ବରେ ଏ ପର୍ଯ୍ୟାୟରେ ପ୍ରଦତ୍ତ ହୋଇଅଛି—

ଅହେ ତାତ ପାଞ୍ଚମନ ପଞ୍ଚଶ ପ୍ରକୃତି ।
ଏ କାୟା ଘରକୁ ବୃଥା ଭ୍ରମରେ ପକାନ୍ତି ।
ବାଅସ୍ତ୍ରୀ ନାଡ଼ି ପୁଣି ଶ୍ରୈୟଅଣୀ ହେନ୍ତି,
ପବନର ଚେଷ୍ଟା ଚେଷ୍ଟି ସକଳର ତତ୍ତ୍ୱ ।
ଇଅଁଳା ପିଅଁଳା ପୁଣି ମଧ୍ୟେ ସୁଷୁମ୍ନା,
ଜଙ୍ଘାଠର ଛନ୍ଦ ଏହି ନବ ନାଡି ଅନା ।
ଏଥିରୁ ଜାତ ନାଡି ଯେ ଛତିସ୍ତ୍ରୀ କୋଟି,
ପୁଣି ଏହା ସାର ନାଡି ଅଟଠ ଶ୍ରୈୟଣିଟି ।
ରସନା ନିଶ୍ୱାସ ବୁହେ ଏକଇ ଯେ ବାଟ,
ଶରୀର ଧାରଣାକୁ ଟେକିଲ ଶ୍ରୀହଟ ।
ଇଅଁଳା ଏଡ଼ାବେ ଦେଲା ଚନ୍ଦ୍ରମେଳେ କଳା,
ଅଗତିଭାବକୁ ମନମଥ ଯେ ପିଅଁଳା ।

ପୁଣି ଏହି ରହସ୍ୟାବଳୀର ଅବଲମ୍ବନରେ ଯୋଗମାର୍ଗର ପନ୍ଥା ନିର୍ଦ୍ଦିଷ୍ଟ ହୋଇଛି ଓ କପର ଭାବରେ ଏହି ତତ୍ତ୍ୱ ଅବଧାରଣ କରିବା ସହଜ ହେବ ସେଥିଲାଗି ବିଶ୍ଳେଷଣ ହୋଇଛି ।

ଅଧୋବଦନ ଉଜାଣି ବନ ଗୃହ ଘାଟି,
ଛତିରାଅଣୀ ଅବାହନ ମୁଦ୍ରା ଚଉଷଠି ।
ଧ୍ୟାନେ ଲକ୍ଷ୍ୟ କରି କାୟେ ଚନ୍ଦ୍ରମଳ ଚକ୍ର,
ଶ୍ରୀହଟ ପବନେ ଉଡ଼େ ଚନ୍ଦ୍ରର ଉଦକ ।
ଜ୍ଞାନ ତପନ ଧାପନ ବାୟୁ ସଦା ବ୍ରହ୍ମା,
ଏତକ ଛନ୍ଦ ଅଛଇ ପଞ୍ଚଭୂତ ଅମ୍ବା ।
ଏତେ ଯୋଗ ଭେଦନ ଯେବେ ବହେ ବିଷ୍ଣୁ ବାତ,
ତେତେବେଳେ ଚଳଇ ସେ ପଞ୍ଚଭୂତ ତତ୍ତ୍ୱ ।


Digitized by srujan ka@gmail.com

ସଂପୂର୍ଣ୍ଣେ ଚଳଇ ଧାନ୍ତି ଅନ୍ତରେ ମଧ୍ୟ,
ଜ୍ଞାନ କୋଠା ମଧ୍ୟରେ ସେ ହୋଇଅଛି ଛନ୍ଦା ।
ଇତ୍ୟାଦି ।

ବିଭିନ୍ନ ଦେବ ଦେବୀଙ୍କର ରୂପ, ଗୁଣ ଶକ୍ତି ମହିମା ଷଟଣଷଙ୍କ ଓ ପ୍ରଶସ୍ତିଗାନ କରିବାରେ ଶାରଳା ପରମାନନ୍ଦ ଲାଭ କରିଅଛନ୍ତି । ଇନ୍ଦ୍ର, ଅଗ୍ନି, ସୂର୍ଯ୍ୟ, ପବନ, ନାରାୟଣ ଲକ୍ଷ୍ମୀ, ଶିବ, ଦୁର୍ଗା ଗଣେଶ ପ୍ରଭୃତି ତାଙ୍କ ଉପାସନା ପଦ୍ଧତିରୁ କେହି ବହିର୍ଭୂତ ହୋଇନାହାନ୍ତି । ଏହି ବନ୍ଦନା ଗୁଡ଼ିକର ସରସତା ବଢ଼ିଯାଇଛି ଯଥୋଚିତ ଦେବତାର ପରିଚୟ ଓ ମହତ୍ତ୍ୱ ପ୍ରତିପାଦନରେ ଏବଂ ବନ୍ଦନାଗୁଡ଼ିକ ଛନ୍ଦୋମୟ ମାଧୁର୍ଯ୍ୟରେ ରସାଳ ଓ ପ୍ରାଣସ୍ପର୍ଶୀ ହୋଇଛି । ପରିବ୍ରାଜକ ଶଂକରାଚାର୍ଯ୍ୟ "ଏକୋବ୍ରହ୍ମଃ ନ ଦ୍ୱିତୀୟଃ" ଏହି ସତ୍ୟ ଅବଧାରଣ କରି ଅନନ୍ତ କୋଟି ବିଶ୍ୱର ସୃଷ୍ଟି, କୃଷ୍ଣ, ସ୍ଥିତି ଓ ପରିପାଳନ ମଳରେ ଯେପରି ଅଦ୍ୱୈତ ପରବ୍ରହ୍ମଙ୍କର ମହାସତ୍ତା ଉପଲବ୍ଧି କରିଅଛନ୍ତି ଏବଂ 'ସୋଽହଂ' ତତ୍ତ୍ୱରେ ଏକମାତ୍ର ଆସ୍ଥା ଓ ବିଶ୍ୱାସ ସ୍ଥାପନ କରିଅଛନ୍ତି, ସାଧକ ସାରଳାଙ୍କର ବିଶ୍ୱାସବିଦ୍ଧ ହୃଦୟ ମଧ୍ୟ ଦିବ୍ୟ ଦୃଷ୍ଟିବଳରେ ସେହି ମହାସତ୍ୟରେ ଉପନୀତ ହୋଇଛି ସର୍ବଦେବ ବନ୍ଦନା ବା ଉପାସନା ଯେପରି "କେଶବଂ ପ୍ରତି ଗଚ୍ଛତି" ବୋଲି ଶ୍ରୀମଦ୍ ଭାଗବତ ଓ ଗୀତା ସ୍ପଷ୍ଟ କରିଦେଇଛି, ସାଧକ ସାରଳାଙ୍କର ଉପାସନା ଠିକ୍ ସେହିପରି ସେହି ନୀତିରେ ପର୍ଯ୍ୟବସିତ ହୋଇଛି । ଶଂକରଙ୍କର ସ୍ତୁତି ସ୍ତୋତ୍ରଗୁଡ଼ିକରେ ବିଷ୍ଣୁ, ଲକ୍ଷ୍ମୀ, ଶିବ, ଦୁର୍ଗା ପ୍ରଭୃତି ଅର୍ଚ୍ଚୋପାସନା କଳ୍ପିତ ବହୁ ଦେବ ଦେବୀ ଯେପରି ବନ୍ଦନାର ପାତ୍ର ହୋଇଛନ୍ତି, ସାରଳାଙ୍କର କୃତୀରେ ଠିକ୍ ସେହିପରି ହୋଇଛି ମଧ୍ୟ ।

ଅଗ୍ନି ଉପାସନାଃ—]

ଜୟ ହୁ ଜୟ ହୁ ଦେବ ଦେବ ବୈଶ୍ୱାନର
ଜୟ ହୁ ଜୟ ହୁ ଦେବ ଅଷ୍ଟ ଅଣାକାର
ଜୟ ହୁ ଜୟ ହୁ ଦେବ ସ୍ୱରୂପ ହୁତାଶନ
ଜୟ ହୁ ଜୟ ହୁ ଦେବ ପ୍ରସନ୍ନ ମଙ୍ଗଳା
ଜୟ ହୁ ଜୟ ହୁ ଦେବ ମହା ତେଜ ମୂର୍ତ୍ତି
ଜୟ ହୁ ଜୟ ହୁ ଦେବ ସ୍ୱାହାଦେବୀ ପତି
ଜୟ ହୁ ଜୟ ହୁ ଦେବ ଅଷ୍ଟ ସର୍ବଭକ୍ଷ୍ୟ
ଜୟ ହୁ ଜୟ ହୁ ଦେବ ପିତାମାତା ସାକ୍ଷ୍ୟ
ଜୟ ହୁ ଜୟ ହୁ ମହାବ୍ରହ୍ମ ବେଗଗାମୀ
ଜୟ ହୁ ଜୟ ଅଭୟ ବରଦାତା ସ୍ୱାମୀ ।

ରାମୋପାସନାଃ—

ଜୟ ହୁ ରାମ ଅମୋକ୍ଷଜନ ମୋକ୍ଷଦାତା
ଜୟ ହୁ ରାମ ସକଳ ମନ୍ତ୍ର ପରତ୍ରାତା ।
ଜୟ ହୁ ରାମ ବୈକୁଣ୍ଠପୁର ଅଧିବାସୀ
ଜୟ ହୁ ଶ୍ରୀରାମ ମନ୍ତ୍ରୀଭବ ଭର ନାଶି ।
ଜୟ ହୁ ଶ୍ରୀରାମ ଭୁକ୍ତ ମୁକ୍ତ ଫଳଦାତା
ଜୟ ହୁ ରାମ ନରକୁ ଉଦ୍ଧାର କରତା ।

ଏହାପର ଅର୍ଯ୍ୟଭୂମି ପୂଜିତ ପ୍ରାୟ ସମସ୍ତ ଦେବଦେବୀଙ୍କର ଉପାସନା ହୋଇଛନ୍ତି ମହାଭାରତର ବହୁସ୍ଥଳରେ । କାଳ, ଲଗ୍ନ, ବେଳା, ଯୋଗ ମୁହୂର୍ତ୍ତ ପ୍ରଭୃତିର ବର୍ଣ୍ଣନା ଜ୍ୟୋତିଷତତ୍ତ୍ୱ ଦୃଷ୍ଟିରୁ ଅନେକାଂଶରେ ଦେଖିବାକୁ ମିଳେ, ଯଥା—

ମାର୍ଗଶୀର ଶୁକ୍ଳ ଚତୁର୍ଥୀ ଯେ ଅର୍କବାର
ରୋହଣୀ ନକ୍ଷତ୍ର ବୃଷ ଚନ୍ଦ୍ର ସେ ଦିନର ।

ବିଛା ସଂକ୍ରାନ୍ତିର ଦିନ ପଞ୍ଚମୀ ଯେ ଭୋଗ
ବାୟବ୍ୟ ନାମେ କରଣ ଶୁଭ ନାମେ ଯୋଗ ।
ରୋହିଣୀ ବୃଷ ରାଶି ଯେ ଜାତ ଶୁକ୍ର ଷଷ୍ଠୀ
ସପ୍ତମେ ଶୁକ୍ର ନବମ ଘରେ ବୃଷ ବୃହସ୍ପତି ।
ଏସନ ସମୟେ ହେଲ ଜନ୍ମପତ୍ର ବଳା
ରାତ୍ର ଏଗାର ଘଡ଼ିରେ ପୂର୍ଣ୍ଣଚନ୍ଦ୍ର କଳା ।

ଆଦ୍ୟପର୍ବରେ ଚିତ୍ରାଙ୍ଗଦ, ବିଚିତ୍ରବୀର୍ଯ୍ୟ ଓ ଭୀଷ୍ମ ଜନ୍ମ ବୃତ୍ତାନ୍ତ, ଭୀଷ୍ମଙ୍କ ଦାରତ୍ୟାଗ, ଜସର ଗୁରୁଦକ୍ଷିଣା, ଭୀମର ବିଷଲଡ୍ଡୁ ଭକ୍ଷଣ, ଶକାଜତ ବଧ, ହିଡ଼ମ୍ବକ ବଧ, ଦୁର୍ଯ୍ୟୋଧନର ଅଭିଷେକ, ଦ୍ରୌପଦୀ ସ୍ୱୟମ୍ବର ପ୍ରଭୃତି ଏତେ ଚିତ୍ତାକର୍ଷକ ହୋଇଛି ଯେ ବର୍ଣ୍ଣନାର ପ୍ରତ୍ୟେକ ପର୍ଯ୍ୟାୟ ସରଳ ସାବଲୀଳ ଭାଷାରେ ନୀରସ ପ୍ରାଣରେ ସରସତା ସଂଗ୍ରହ କରିଦିଏ । ଦୁର୍ଯ୍ୟୋଧନଙ୍କର ସୁଶାସନରେ କୁରୁପ୍ରଦେଶ ସୁଖଶାନ୍ତି ଓ ଧନର ପ୍ରାଚୁର୍ଯ୍ୟରେ ହସି ଉଠିଛି ଏବଂ ଭୀଷ୍ମ, କର୍ଣ୍ଣ ପ୍ରଭୃତିଙ୍କ ଭଲ ପରାମର୍ଶ ଦାତା ଓ ବିବେକୀ ମନ୍ତ୍ରୀମାନଙ୍କ ଯୋଗେ ରାଜ୍ୟର ଶ୍ରୀ ବହୁବର୍ଦ୍ଧିତ ହୋଇଛି । ଏହି ପର୍ଯ୍ୟାୟରେ—

ବାଟିକେ ରାମଚନ୍ଦ୍ର ଯା ନେଉଥିଲେ କର,
ତେସନ କର ବିହିଲେ କୁରୁ ନୃପବର ।
ଗୋଚର ଗୋଦାଣ୍ଡି ଖଣ୍ଡି ଉଠିଅ ଯେ ଭୂମି,
ତହିଁରୁ କର ଆଦାୟ କଲେ ଦେବ ସ୍ୱାମୀ ।
ଥାନି କାଟିବର କର ଖଣ୍ଡ ପରଜାଙ୍କ
ଭିଅଣ କର ବାହନ ଭଣ୍ଡାରୁ ଦେବାକୁ ।

ଏ ବିଧି ଭିଆଣ କଲେ ଛତିଶ ମଣ୍ଡଳେ
ଦେବ ବ୍ରାହ୍ମଣଙ୍କ କର ମୁକ୍ତ ସର୍ବ କାଳେ
ନିଯୋଗ ଭୂମିକୁ ମୁକ୍ତ ଦେଲେ ଦେବତାଙ୍କୁ
ଯଯାତି ପାଞ୍ଜି ପ୍ରମାଣେ ପାଳିଲେ ପ୍ରଜାଙ୍କୁ ।

× × ×

ଏହି ବର୍ଣ୍ଣନା ସଂସ୍କୃତ ମହାଭାରତରେ ହୋଇଥିବା ବର୍ଣ୍ଣନାବଳୀକୁ ମୌଳିକତା ଦୃଷ୍ଟିରୁ ଓ ତଦାନୀନ୍ତନ ଶାସନ ପଦ୍ଧତିର ବାସ୍ତବତା ଦୃଷ୍ଟିରୁ ଅଧିକ ସୁନ୍ଦର ହୋଇଛି । ମହାକବି ଭାରବୀ କିରାତାର୍ଜ୍ଜୁନୀୟଂ ମହାକାବ୍ୟରେ ଦୁର୍ଯ୍ୟୋଧନର ସୁଶାସନ ସମ୍ପର୍କରେ ଏହିପରି ବର୍ଣ୍ଣନା କରିଅଛନ୍ତି,—

ଉଦାର କୀର୍ତ୍ତି ରୁଦୟଂ ଦୟାବତଃ
ପ୍ରଶାନ୍ତ ବାଧ ଦିଶଣେ ଧୀରକ୍ଷୟା
ସ୍ୱୟଂ ପ୍ରଦୁଗ୍ଧେ ସ୍ୱଗୁଣୈ ରୁପସ୍ନୁତା
ବସୂପମାନସ୍ୟ ବସୂନି ମେଦିନୀ ।
ସୁଖେନଲଭ୍ୟା ଦଧତଃ କୃଷୀବଲୈ
ରକୃଷ୍ଟପଚ୍ୟାଇବ ଶସ୍ୟ ସମ୍ପଦଃ
ବିତନ୍ୱତେ କ୍ଷେମମଦେବ ମାତୃକା
ଚିରାୟ ତସ୍ମିନ୍ କୁରବଃ ଚକାସତି ।
ସ ଯୌବରାଜ୍ୟେ ନବ ଯୌବନୋଦ୍ଧତଂ
ନିଧାୟ ଦୁଃଶାସନମିଦ୍ଧ ଶାସନଃ
ମଖେ ସ୍ୱଖିନ୍ନୋନୁମତଃ ପୁରୋଧସା
ଧିନୋତି ହବ୍ୟେନ ହିରଣ୍ୟରେତସଂ ।

ତୀର୍ଥ ବର୍ଣ୍ଣନାଃ—

ତୀର୍ଥ ବର୍ଣ୍ଣନାରେ ଭାରତର ପ୍ରଧାନ ତୀର୍ଥାବଳୀ ଏକ ବର୍ଣ୍ଣନାର ଆଡ଼ମ୍ବର—

ଗଙ୍ଗା ଗୟା ଗୋଦାବରୀ ଅଜ କୃଷ୍ଣବେଣୀ
ହରଗଙ୍ଗା ନାଶିନୀ କେଦାର ବୈତରଣୀ ।
ସୁମତୀ ବେଦବତୀ ଯେ ପ୍ରାଚୀ ଚନ୍ଦ୍ରଭାଗା
ଭଗିରଥୀ ସରସ୍ୱତୀ ପୁଣି ଗୋପ୍ୟଗଙ୍ଗା ।
ମନ୍ଦାଗ୍ନି ଗୋମତୀ ଫଲ୍‌ଗୁ ପୁଣି ସୋନଭଦ୍ରା
କାବେରୀ ମଣିକର୍ଣ୍ଣିକା ମାନୀ ମାନମୁଦା ।
ଶ୍ରୀ ସରସ୍ୱତୀ ସଙ୍ଗମ ଭବାନୀ ବାହ୍ନନୀ
କାମାକ୍ଷୀ କାଳନ୍ଦୀ ମହା ତତ୍ତ୍ୱରସମାନୀ ।
ବାଣି କୌଶିକୀ ଅନ୍ଧକ ଅବର ଗୋମତୀ
ଶବାଙ୍ଗୀ ଶତଭଦ୍ରା ଯେ ନର୍ମଦା ରେବତୀ
ଇତ୍ୟାଦ

ଦୁର୍ଯ୍ୟୋଧନାଦ ଭ୍ରାତା ବର୍ଣ୍ଣନ ଏବଂ ପଦବିନ୍ୟାସ କୌଶଳ—

ସେ ସଭା ମଧ୍ୟମା ଅଟେ ଏହୁପର ଜାଣ
ଦୁନ୍ଦୁଭି ଠମକ ବାଜେ ଉଭୟ ନିଶାଣ ।
ଦୁଃଶାସନ ଦୁର୍ଯ୍ୟୋଧ ଯେ ଦୁର୍ବିନ୍ଦ ଦୁରନ୍ତ
ଦୁର୍ବର୍ଣ୍ଣ ଦୁର୍ମନ ଯେ ଦୁର୍ବୀଳ ଦୁର୍ବୀତ ।
ଦୁର୍ଜନ ଦୁଃଶଙ୍ଖ ଦୁର୍ମ ଦୁଃଶିର ଦୁର୍ବାର
ଦୁର୍ଜୀତଳ ଦୁର୍ବାସନ ଦୁର୍ଜସ୍ୱ ଦୁସ୍ୱାଳ
ଦୁର୍ଜୀକ ଦୁରନ୍ତକ ଯେ ଦୁର୍ବିନ୍ଧାଦ ବୋଲି
ଦୁର୍ଦ୍ଧାନ, ଦୁର୍ହାନ, ଦୁରପକ୍ଷାଦ କହନ୍ତି

ଏ ବଧିରେ ଦୁର୍ଯ୍ୟୋଧନ ଭ୍ରାତା ଅଟେ ଶତେ
ଦୁଂସା ମନ୍ତ୍ରୀ ଦୁର୍ନାମ ଅଛନ୍ତି ସଭଏ ।

ନିନ୍ଦା କରିବାର ପାପାପାପ ବିଚାର, ଏବଂ ସରସଭାଷା ପ୍ରୟୋଗରେ ନୀତି ନିହିତ ଶିକ୍ଷା—ଏ ପର୍ଯ୍ୟାୟରେ କବିଙ୍କର ବିଚାରବୁଦ୍ଧି ଶାସ୍ତ୍ରୋଚିତ ବିଧାନକୁ ପଦେ ପଦେ ରକ୍ଷା କରନ୍ତି ଏବଂ ଆର୍ଯ୍ୟ ସଂସ୍କାର ଭିତରେ ଯାହା ଆଦର୍ଶ ଓ ଜୀବନର ଉଜ୍ଜ୍ୱଳକାରୀ ତାହାହିଁ ସତ୍ୟ ବୋଲି ସାରଳା ଅବଧାରଣ କରିଅଛନ୍ତି । ପାପ ପୁଣ୍ୟ ଓ ତାହାର ବିଭିନ୍ନ ବିକ୍ରିୟା କବିଙ୍କ ଲେଖନୀରେ ବହୁସ୍ଥଳରେ ରୂପାୟିତ ହୋଇଛି । ହୀନବୁଦ୍ଧି ମନୁଷ୍ୟର ଅଧୋଗତି ସୁନିଶ୍ଚିତ । ପାପର ପରାଜୟ ଓ ଧର୍ମର ଜୟ ଅବଶ୍ୟମ୍ଭାବୀ ଏହା ପ୍ରସଙ୍ଗଭେଦରେ ପ୍ରଦର୍ଶନ କରିବା ଲାଗି ମହାକବି ସର୍ବଦା ଓ ସର୍ବଥା ବ୍ୟାକୁଳ । ଯାହା ଅଶାସ୍ତ୍ରୀୟ, ତାହା ଅନୀତି; ଯାହା ଅନୀତି ତାହା ହୀନ ଜୀବନର ବାସ୍ତବରୂପ । ଯେଉଁଠି ହୀନତ୍ୱ ସେହିଠାରେ ହିଁ ବିବେକର ତାଡ଼ନ ବା ଜ୍ଞାନର ଆଲୋକ ସୁଦୂର ପରାହତ । ଯେଉଁଠି ମୋହ ଓ ଅବିଦ୍ୟା ସେହିଠାରେ ହିଁ ଦୁର୍ବାର ଦାନବର ଦୁରନ୍ତଲୀଳା । ସେହିଠାରେ ହିଁ ମନୁଷ୍ୟତାର ବିକାଶ ନାଟକରେ ଶେଷ ଯବନିକା ପତନ । ଯେଉଁଠି ଅସତ୍ୟର ପ୍ରାବଲ୍ୟ ସେହିଠାରେ ପ୍ରାଣମୟୀ ସ୍ୱର୍ଗୀୟ ପରିକଳ୍ପନାର ଆଭାସ ନାହିଁ । ସେହିଠାରେ ହିଁ ଅଧର୍ମ, ଅକର୍ମ ଓ ଅତ୍ୟାଚାର ସବୁ ରୂପରେ ଦେଖାଦେଇ ଥାଏ । ଏହି ପ୍ରସଙ୍ଗରେ ସାରଳା ବର୍ଣ୍ଣନା କରିଅଛନ୍ତି,—

ପାଦରେ ଲକ୍ଷ୍ମୀଙ୍କି ତୁମେ ପେଲୁଛ କି ଅର୍ଥେ,
ମରିବା ଉପାୟ କରୁଅଛ ବେଳ ଭ୍ରାତେ ।

ଦେବଙ୍କୁ ନିନ୍ଦିଲେ ନର୍କେ ପଡ଼େ ହୋଇ ଜାତ,
ବ୍ରାହ୍ମଣ ନିନ୍ଦିଲେ ବଂଶ ହୁଅଇ ନିପାତ ।
ଗୁରୁ ନିନ୍ଦାକଲେ ପ୍ରାପ୍ତ ନ ହୁଅଇ ବିଦ୍ୟା,
ବାତୁଳ ହୋଇ ବୁଲନ୍ତି ନୋହୁ ଯୋଗସିଦ୍ଧା ।
ପିତାଙ୍କୁ ନିନ୍ଦା କଲେ ଯେ ପଡଇ ପ୍ରମାଦ,
ମାତା ନିନ୍ଦା ସବୁଠାରୁ ବଳ ଅପରାଧ ।
ନ ଜାଣି ନିନ୍ଦା କରନ୍ତି ଯେତୁ ବୈଦ୍ୟ ଯୋଗୀ,
ଜନ୍ମେ ଜନ୍ମେ ମହାଦୋଷେ ହୁଅନ୍ତି ସେ ରୋଗୀ ।
ମଇଁଷକୁ ନିନ୍ଦାକଲେ ହୁଅନ୍ତି ପାମର,
ଅଉଷଧି ନିନ୍ଦିଲେ ରୋଗ ହୁଅଇ ଅପାର ।
ଲକ୍ଷ୍ମୀ ନିନ୍ଦିଲେ ଦରିଦ୍ର ଦୋଷ ଜନ୍ମେ ଜନ୍ମେ,
ଭାରତ ନିନ୍ଦିଲେ ଗଙ୍ଗ ମୂର୍ଖ ସିନା ଜନେ ।
ଗୋରୁ ନିନ୍ଦା କଲେ ହାନି ହୁଅଇଟି କୃଷି,
ପୁତ୍ର ନିନ୍ଦାକଲେ ଜନ ହୁଅଇ ନିଅଂଶୀ ।
ସତୀ ନିନ୍ଦାକଲେ ତା'ର ନୋହେ ଗୃହବାସ,
ମହତ ନିନ୍ଦିଲେ ହୋଏ ଅପ୍ରମିତ ଦୋଷ ।

ଏହି ଗ୍ରନ୍ଥରେ ଭରପୂର ହୋଇଛି ନୀତି ନିୟନ୍ତ୍ରିତ ମନସ୍ତତ୍ତ୍ୱ । ମନୋବୃତ୍ତିର ପରିବର୍ତ୍ତନ ଦେଶ, କାଳ, ପାତ୍ର ବିଚାରରେ ଯାହା କିଛି ହେଉନା କାହିଁକି, ଯାହା ସଦ୍ ଜ୍ଞାନ ଲବ୍ଧ, ସତ୍ୟପୂତ, ଶାନ୍ତି ନିୟାମକ ଓ ସୌଜନ୍ୟର ଅନୁକୂଳ ତାହା ହିଁ ମାନବ ସଭ୍ୟତାର ପରିପୂରକ । ତେଣୁ ବୁଦ୍ଧିକୁ ଓ ମନୋବୃତ୍ତିକୁ ଉଜ୍ଜ୍ୱଳ କରିବା ଲାଗି ସଂସ୍କାରମୂଳକ ଅର୍ଥ ନୀତି, ସତ୍‌ସଙ୍ଗ, ସତ୍‌ଶାସ୍ତ୍ର, ସତ୍‌କାର୍ଯ୍ୟ, ସତ୍‌ବଚନ, ସତ୍ ଧ୍ୟାନ ଓ ସଦାଚାରକୁ ସର୍ବଦା ଅଗ୍ରେ ଆଦର୍ଶ କରି ଥୋଇଛି ଓ ନାନା

ପରିବର୍ତ୍ତନ ହେଲେ ସୁଦ୍ଧା ମହତ୍‌ ସବୁବେଳେ ହିଁ ମହତ୍‌, ଏହି ତଥ୍ୟ ମୂଳମନ୍ତ୍ର ରୂପ ଧରି ନେଇଛି । ସେହି ହେତୁରୁ—

'କାବ୍ୟ ଶାସ୍ତ୍ର ବିନୋଦେନ
କାଲୋଗଚ୍ଛତି ଧୀମତାଂ
ବ୍ୟସନେନ ଚ ମୂର୍ଖାଣାଂ
ନିଦ୍ରୟା କଲହେନ ବା ।'

ଏହାର ସତ୍ୟତା ବାସ୍ତବ ଜୀବନରେ ଅକ୍ଷରେ ଅକ୍ଷରେ ପ୍ରତିପାଦିତ କରିବା ବାଞ୍ଛନୀୟ ।

'ଖଳେନ ସହ ସଙ୍ଗତିଃ ସୁଜନ ସଙ୍ଗତୋ ବିଚ୍ୟୁତିଃ
କୁବୃତ୍ତି ଗୁଣସେବନଂ ପରବଶାଚ୍ଛନୈର୍ଜୀବନଂ ।
ଅକୃତ୍ୟବିଷୟେ ସ୍ପୃହୋନ୍ନିଜଜନେ ବୃଥା ବିଗ୍ରହୋ
ମୃଷେତି ମତି ସଂତମେ ମନସି ସପ୍ତ ଶଲ୍ୟାନି ମେ ।'

ଏହି ନୀତି ମନସ୍ତାତ୍ତ୍ୱିକ ବିଭିନ୍ନ ବିଭାଗ ଉପରେ ପ୍ରଭାବ ପକାଇଲେ ସ୍ୱର୍ଣ୍ଣ ସ୍ୱର୍ଣ୍ଣ ତଦନୁରୂପ କିମ୍ବା ଗୁଡ଼ିକ ସଂସ୍କୃତ ସଂଗତ, ସଯତ, ସରସ ଓ ସର୍ବାଙ୍ଗସୁନ୍ଦର ହୋଇ ପାରିବ । ମହାକବି ଶାରଳା ମାନବର ମନୋବୃତ୍ତି ଘଟିତ ମନସ୍ତତ୍ତ୍ୱ ତନ୍ନ ତନ୍ନ ବିଶ୍ଳେଷଣ କରି ତାହାର ପରିମାର୍ଜନ ଲାଗି ପନ୍ଥା ସୁଗମ କରି ଦେଇଛନ୍ତି । ଶାରଳା ମହାଭାରତର ଗଭୀର ଉପଦେଶାତ୍ମକ ବାକ୍ୟଗୁଡ଼ିକ ଅନ୍ତର ତଥା କୀର୍ତ୍ତିତ ସତ୍ୟତାର ଉପର ଅନୁକୂଳ ବା ପ୍ରତିକୂଳ ହେଉଛି ଏବଂ ସେଥିଲାଗି ଫଳାଫଳ ପରିଣାମରେ କପର ଭାବରେ କାର୍ଯ୍ୟ କରୁଛି, ଯେ କୌଣସି ବ୍ୟକ୍ତିର ବୁଦ୍ଧି ସମ୍ପନ୍ନ ମନସ୍ତତ୍ତ୍ୱବିତ୍ ପକ୍ଷେ ବିବେଚନା କରିବା କଠିନ ହୋଇ ନ ପାରେ ।

ଖାଦ୍ୟ ବର୍ଣ୍ଣନା କରିବାକୁ ଯାଇ ନଳଦମୟନ୍ତୀ ସ୍ଥାନରେ ଭୋଜନ ଉପଲକ୍ଷ ଭକ୍ତ ପ୍ରସଙ୍ଗରେ ସାରଳା ଯେପରି ସଜାଇଛନ୍ତି ସେଥିରେ ବୈଷ୍ଣବ, ଶୈବ, ଶାକ୍ତ, ସମସ୍ତଙ୍କ ଲାଗି ଦ୍ୱାର ଖୋଲା ରହିଛି । କିନ୍ତୁ ବର୍ଣ୍ଣନା ପଦ୍ଧତିରେ ତତ୍କାଳୀନ ସମ୍ଭ୍ରାନ୍ତ ବଂଶର ମନୋଭାବ ଚରିତ୍ର ନିହିତ ହୋଇଛି । ଯଥା—

ଦଣ୍ଡୀ ହରିଣ ସୁପକ୍ୱ ମାଂସ ଅଧ ଭୋଜ
ଭଜନ୍ତୁଟିକ ପରଷନ୍ତି ଯେତେ ଯେତେ ଭୁଞ୍ଜି ।
ଭୋଜନରେ ଅତିଥି ଏ ହୋଇଲେ ତୃପତ
ହାସରସେ ସୁପକାରେ ଆଣି ପରଷନ୍ତି ।
ଶାକର ଅବର ତହିଁ ଦ୍ରବ୍ୟ ଖଣ୍ଡ ପୋଡ଼ା
ମଧୁରୁଚି ସରପୁଲି ଦଧି ଛେନା ଝଡ଼ା ।
ପାକେ ମାଂସ ମାଛ ଯେ ଘୃତ ରସ ଭଜା
ପୁଣି ଭୋଜନ ପରଷନ୍ତି ପାଞ୍ଚାଳର ରାଜା ।
ଅମ୍ବିଳ ଯେ ନାରଙ୍ଗିଲ ଶାକରସ କାଞ୍ଜି
ବିଶାଳ ଯୋଜନ ଲୋକ ତୃପ୍ତ ହୋଇ ଭୁଞ୍ଜି ।
ପଞ୍ଚକର ମହୁମାତ କହୁତ କେ ପାରି
ଘୃତ ମଧୁ ରସାମୃତ ପଣା ପାନ କରି ।
ଆଚମନ କଲେ ଭୋଜନ କନକର ଝରି ।
ସୁବାସିତ ନୀରେ ଦେଲେ ମୁଖ ଧୌତ କରି ।
ସୁବର୍ଣ୍ଣ ଖଡ଼ିକା ଭୋଜନ ଦନ୍ତମାନ ଖୁଣ୍ଟି
କର୍ପୂର ତାମ୍ବୁଳ ଭୁଞ୍ଜି ଆସନକୁ ଉଠି ।

ଏହି ପ୍ରସଙ୍ଗରେ ଅତିଥି ସତ୍କାର ମର୍ଯ୍ୟାଦା କିପରି ସାରଳା ଲେଖନୀରେ ରୂପରେଖ ପାଇଛି ସହଜେ ଅନୁମେୟ ।

ସ୍ୱୟମ୍ବର ସଭାରେ ଦ୍ରୌପଦୀ :—

କେଶିନୀ ଯେ ଇନ୍ଦୁସେନୀ ଧରିଛନ୍ତି ହସ୍ତ
ଦେଖିଲେ ଯାଜ୍ଞସେନୀର ମୁଖ, ରୂପ, ଗାତ୍ର ।
କୁଞ୍ଚିତ କେଶ ଏହାର କେଡ଼େ ମନୋହର
ବିହରନ୍ତି ପୁଷ୍ପଗନ୍ଧ ପାଇ ମଧୁକର ।
ରସାଣିଲା ପଦ୍ମ ପ୍ରାୟ ଲଲାଟର ପାଟୀ
ବନ୍ଧୁଲୀ ଡାଳିମ୍ବ ବିମ୍ବ ପ୍ରାୟ ଓଷ୍ଠ ଫୁଟି ।
ଭ୍ରୂଲତା କନ୍ଦର୍ପ ଚାପ କଟାକ୍ଷ ତା ବାଣ
ନିମିଷକେ ନେବ ଯୁବା ଜନଙ୍କର ପ୍ରାଣ ।
ସୁନ୍ଦର ରଞ୍ଜିତ କାମ କମନୀୟ ଡୋଳା
ରୋମାବଳୀ ରେଖାରେ ଏ ସଯାତେ ଚପଳା ।
ଆରକ୍ତ ନୟନ କି ସେ ନୀଳ ଉତପଳ
କମ୍ପିତ ମାନେ ଚାହିଁଲେ ଟଳିବେ ସକଳ ।
ଚାହାନ୍ତେ ବକ୍ର ନୟନେ ହୃଦ ଯିବ ଫୁଟି
ଜନହିତେ ପୃଥିବୀରେ ରଖିଅଛୁ ଦୃଷ୍ଟି ।
କମ୍ପିତ ମାନ ଏ ଯେବେ ଚାହିଁବ ସଖୀକୁ
ଅନେକ ପୁରୁଷ ହତ୍ୟା ଲାଗିବ ଏହାକୁ ।
ସ୍ତ୍ରୀଙ୍କ ରତ୍ନମଣି ଏହୁ ସୁଜ୍ଞାନ କାମିନୀ
ପାପକୁ ସେ ଭୟ କରି ହୋଇଲା ମାନିନୀ ।
ଯଦ୍ୟପି ପାଷାଣ ଲୁହା ବଜ୍ର ହୋଇଥିବ
ଅପାଙ୍ଗେ ଚାହିଁଲେ ସେହୁ ହୃଦ ଫୁଟି ଯିବ ।
ଦେବକାର୍ଯ୍ୟେ ଜନମ ଏ ଜଗତ ମୋହିନୀ
ଋଷି ତପୋଧନଙ୍କ ତପସ୍ୟା ଭଙ୍ଗିନୀ ।
ନାସାକୁ ତା ପଟାନ୍ତର ନୋହେ ତିଳ ଫୁଲ
ଅନେକ ବଳମ୍ବେ ଝଡ଼ି ପଡ଼େ ଭୂମି ତଳ ।


Digitized by srujan ka@gmail.com

ଅଛୁଟି ଶୋଭା ବନକ ପସକୁ ଏ ଜଣି
ଶୀତଳ ପବନ କି ମଳୟାନିଳ ମଣି ।
ଏହା ନାସିକାରୁ ଯେବେ ବହିବ ପବନ
ନିମ୍ବ ସାହାଡ଼ାରେ ଲାଗି ହୋଇବ ଚନ୍ଦନ ।
ତାମ୍ବୂଳ ବହ୍ନିନେ ରାଗ ଅଧରେ ପ୍ରକଟି
ବାଳାଦତ୍ୟ କି କୁସୁମ ଫୁଲ ଅଛି ଫୁଟି ।
ଶରଦଚନ୍ଦ୍ର ବଦନା ବୋଲନ୍ତେ ତ ଭଲ
ରାହୁ ତେଜ ଲାଗି ସେହୁ କଳଙ୍କ ବହିଲା ।
ନିଷ୍କଳଙ୍କ ବଦନଟି ଏହାକୁ ନିର୍ଦ୍ଦେଶି
ତେଣୁ ଏହା ପଟାନ୍ତର ନୋହେ ପୂର୍ଣ୍ଣ ଶଶୀ ।

× × × ×

କଳିଟି ରାମ ରମ୍ଭାରୁ ଜାନୁ ଜଂଘ ବଳ
ରକ୍ତ କୁମୁଦ ଜିଣି ଦଶେ ପାଦ ତଳ ।

ଏହି ସବୁ ବର୍ଣ୍ଣନାର ଗୁରୁତ୍ୱ ଓ ରଚନା ଶୈଳୀର ନୈପୁଣ୍ୟ ପରବର୍ତ୍ତୀ ଯୁଗମାନଙ୍କର କାବ୍ୟ କବିତା ଉପରେ କିପରି ଅଖଣ୍ଡ ପ୍ରଭାବ ବିସ୍ତାର କରିଛି ତାହାର ଦୃଷ୍ଟାନ୍ତ ସହସ୍ର ସହସ୍ର ସଂଖ୍ୟାରେ ପ୍ରଦତ୍ତ ହୋଇ ପାରେ । ମହାପୁରାଣର ସୁଦୀର୍ଘ ପରିସରରେ ବର୍ଣ୍ଣନାବଳି ଅବାରିତ ମନ୍ଦାକିନୀ ପରି ରସର ବନ୍ୟାରେ ଗ୍ରାହକ ଓ ରସିକର ପ୍ରାଣକୁ ପ୍ଲାବିତ କରି ରସାଣ କରିଦିଏ । ସେହି ଦ୍ରୌପଦୀ ଯେତେବେଳେ ଦୁଃଶାସନର ହସ୍ତରେ ଅକୃଷ୍ଟ ହୋଇ କୁରୁ ସଭାକୁ ଅଣାତ ହୁଅନ୍ତି, ଚନ୍ଦଣ ହୋଇଛି ଭିନ୍ନ ପ୍ରକାର ।

ତରତରେ କେଶବାସ ଟିକି ପଡ଼େ କେଛି
ବ୍ୟାଧ ଭୟେ ଏଣୀ ଯେବେ କରୁଥାଇ ଦୃଷ୍ଟି ।

× × ×

ଭୀଷ୍ମପର୍ବ, କର୍ଣ୍ଣପର୍ବ, ଦ୍ରୋଣପର୍ବ, ଶଲ୍ୟପର୍ବ, ବିରାଟପର୍ବ ପ୍ରଭୃତିରେ ଦ୍ୱନ୍ଦ୍ୱଯୁଦ୍ଧ ଓ ମହାଯୁଦ୍ଧ ଗୁଡ଼ିକର ବର୍ଣ୍ଣନା ବହୁ ଅତିଶୟୋକ୍ତି ଓ ଅତିରଞ୍ଜନ ଭିତରେ ପର୍ଯ୍ୟବସିତ ହୋଇଥିଲେ ସୁଦ୍ଧା ସାରଳା ଯୁଦ୍ଧପଦ୍ଧତିର ଯଥୋଚିତ କୌଶଳ, ଅସ୍ତ୍ରାଦିର ବ୍ୟବହାର ପ୍ରତିଦ୍ୱନ୍ଦୀ ଯୋଦ୍ଧାମାନଙ୍କର ବୀରତ୍ୱ, ମଲ୍ଲ ଯୁଦ୍ଧର ପରାକାଷ୍ଠା, ବୀର ବଚନିକା, ବିଜୟୀର ମନୋବୃତ୍ତି, ବିଜିତର ଦୁର୍ଦ୍ଦଶା, ରଥୀ ମହାରଥୀ, ପଦାତି, ଗଜାରୋହୀ, ଅଶ୍ୱାରୋହୀ ପ୍ରଭୃତିଙ୍କର ସମ୍ମୁଖ ସମର, ଯୁଦ୍ଧ ସଜ୍ଜା ଦୃଷ୍ଟିରୁ ବହୁ ସ୍ଥଳରେ ବଡ଼ ଚତୁର ଭାବରେ ଚିତ୍ରଣ କରି ଅଛନ୍ତି । ଏହି ପ୍ରସଙ୍ଗ ଗୁଡ଼ିକରେ ଯେଉଁ ରଥୀ ଓ ମହାରଥୀ ବୀର ଜୀବନର ଯେଉଁ ସୋପାନରେ ଅଧୀନ, ତାହାର ବର୍ଣ୍ଣନା ତଦନୁରୂପ ହୋଇଛି । ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟ, କୃପ, ଶଲ୍ୟ, ମହାବଳୀ, ମହାରଥୀ କର୍ଣ୍ଣ, ଭୀମ, ଦୁଃଶାସନ, ପିତାମହ ଭୀଷ୍ମ ଓ ଅର୍ଜ୍ଜୁନ ପ୍ରଭୃତିଙ୍କର ଶୌର୍ଯ୍ୟ ଓ ବୀର୍ଯ୍ୟ, ଶସ୍ତ୍ରାସ୍ତ୍ର ପ୍ରୟୋଗ ନୈପୁଣ୍ୟ ଓ ବୀର ହୃଦୟର ମହତ୍ତ୍ୱ ଏକା ଧାରରେ ସାରଳାଙ୍କ ଲେଖନୀରେ ଅଭିନବ ରାଗରେ ରଞ୍ଜିତ ହୋଇଛି । ବୀରୋପାଖ୍ୟାନ ଗୁଡ଼ିକ ବା ଯୁଦ୍ଧ ମହାଯୁଦ୍ଧ ସଂକ୍ରାନ୍ତ ପଠିତ ହୋଇ ବୀରରସର ପରିବେଷଣ ହେଉଥିଲାବେଳେ ପୁରପଲ୍ଲୀର ମନ୍ତ୍ରମୁଗ୍ଧ ଜନତା ମହାଭାରତୀୟ ସେହି ପ୍ରସଙ୍ଗ ଗୁଡ଼ିକ ପ୍ରତି ସ୍ୱତଃ ଅନୁରକ୍ତ ହୋଇ ପଡ଼େ । ରାକ୍ଷସମାନଙ୍କ ସହିତ କପିଳ ଯୁଦ୍ଧ ଏବଂ ଭୀମାର୍ଜ୍ଜୁନ ପ୍ରଭୃତିଙ୍କର ବୀରତ୍ୱର ପରାକାଷ୍ଠା ଜୀବନ୍ତହୋଇଛି ସେହି ସେହି

ପର୍ଯ୍ୟାୟରେ । ବର୍ଣ୍ଣନାର ଭିତରେ ଭିତରେ କୌତୁକ ଓ ହାସ୍ୟ ରସର ବିରାମ ନାହିଁ । ରୁଦ୍ର, ବୀଭତ୍ସ, ଭୟାନକ ପ୍ରଭୃତି ରସଗୁଡ଼ିକ ସମାନ୍ତରାଳ ଭାବରେ ପ୍ରସଙ୍ଗୋଚିତ ରୀତି ଅନୁସରଣ କରି ଗତି କରିଛନ୍ତି ସ୍ୱାଧୀନ ଓ ସାବଲୀଳ ଭାବରେ । ଯୁଦ୍ଧ ପର୍ବ ଗୁଡ଼ିକରେ ବହୁଳ ବର୍ଣ୍ଣନାଗୁଡ଼ିକ ଭିତରୁ କେବଳ ଗୋଟିଏ ଗୋଟିଏ ଉଦାହରଣ ଦେବାଲାଗି ଗୋଟିଏ ଗୋଟିଏ ପୁସ୍ତକ ହୋଇଯିବ । ସମରାଭିଯାନବେଳେ ପାଣ୍ଡବମାନଙ୍କର ପକ୍ଷରେ ମଙ୍ଗଳ ସକୁନ—

ଏମନ୍ତ କାଳେ ଉତ୍ତର ଦିଗେ ହସ୍ତୀ ଛିଙ୍କି
ଶୁଭେ ନାରୀ ଡାକ ଦଧି ମଙ୍ଗଳ ଉହିଁକି ।
ବାମରେ ଯେଗ୍ନି ଅଗ୍ନେୟ କୋଣେ କଲେ ସ୍ଥିତି
ଈଶାନେ ଉଦୟ ହେଲେ ମହାଲକ୍ଷ୍ମୀ ମୂର୍ତ୍ତି ।
ଶ୍ରୀୟା ନାମରେ ବିଖ୍ୟାତ ଏକ ଗୋପାଙ୍ଗଣୀ
ସମ୍ମୁଖରେ ଡାକଇ ଆସି ଦଧି ଭାଣ୍ଡ ଘେନି ।
ଯମୁନା ନଦୀ ମଧ୍ୟରୁ ଡେଇଁ ମାଛ ଏକ ।
ସମ୍ମୁଖରେ ପଡ଼ିଲା ଯାଇ ଦେଖିଲେ ପ୍ରତ୍ୟକ୍ଷ ।
ଶଙ୍ଖଚିଲ ଡାକ ଦିଏ ପଶ୍ଚିମ ମୂରତି
ଭଦ ଭଦଳିଆ ପକ୍ଷୀ ରମ୍ଭା ବୃକ୍ଷେ ସ୍ଥିତି ।
ସର୍ବ ଅନୁକୂଳ ହନୁ ଅଗେ ହୁଏ ଦୃଷ୍ଟି
ଅଦଭୁତେ ଆକାଶରୁ ହେଲା ପୁଷ୍ପ ବୃଷ୍ଟି । ଇତ୍ୟାଦି ।

ମହାଭାରତ ଯୁଦ୍ଧରେ କୁଳପତି, କୁରୁ ଓ ପାଣ୍ଡବମାନଙ୍କର ପକ୍ଷ ଭାବରେ ଯୋଗ ଦେଇଥିଲେ ଭାରତର ବିଭିନ୍ନ ଅଞ୍ଚଳର ରାଜା ମହାରାଜା ଓ ବୀର ଯୋଦ୍ଧୃବୃନ୍ଦ । ପ୍ରତ୍ୟେକ ଦିନ ଯୁଦ୍ଧରେ କୌରବ ଓ ପାଣ୍ଡବମାନଙ୍କ ପକ୍ଷରୁ ଯେଉଁମାନେ ପ୍ରଧାନରଥୀ ଓ

ମହାରଥୀ ବା ସେନାପତି ପଦରେ ନିଯୁକ୍ତ ତାହାର ବଳବୀର୍ଯ୍ୟ ପୂର୍ଣ୍ଣାଙ୍ଗ ହୋଇ ପରିକଳ୍ପିତ ହୋଇଛି । ମହାଭାରତ ଯୁଦ୍ଧ ପୂର୍ବର ମଧ୍ୟ ଉଣା ଅଧିକ ପରିମାଣରେ ବୀର ଜୀବନର ବିଭିନ୍ନ ପରୀକ୍ଷା କ୍ଷେତ୍ରରେ ଭୀଷ୍ମ, ଦ୍ରୋଣ, ଅର୍ଜୁନ, କର୍ଣ୍ଣ ପ୍ରଭୃତି ଶତ ଶତ ବୀର ଓ ମହାବୀରଙ୍କର ବିକ୍ରମ ସୁପରୀକ୍ଷିତ ହୋଇ ସାରିଥିଲା । ମାତ୍ର ଧର୍ମାଧର୍ମ ସ୍ୱାର୍ଥାସ୍ୱାର୍ଥ, ବିଗ୍ରହବିଗ୍ରହର ଦୃଷ୍ଟିରୁ ବିଧାତାର ନିର୍ଦ୍ଦେଶରେ ଶେଷ ନିଷ୍ପତ୍ତି ହୋଇଛି ମହାଭାରତ ମହାସମର କ୍ଷେତ୍ରରେ । ବିଧାତାର ଇଚ୍ଛାରେ ବୀରୋତ୍ତମ ମଧ୍ୟ ସ୍ୱାର୍ଥବୁଦ୍ଧି ସଂପନ୍ନ କୌରବ ପକ୍ଷର ସପକ୍ଷ ହୋଇ ବହୁ ବଳ ବୀର୍ଯ୍ୟରେ ମଣ୍ଡିତ ହୋଇ ସୁଦ୍ଧା ଓ ରଣାଙ୍ଗନରେ ଅପରିସୀମ ଶୌର୍ଯ୍ୟର ପ୍ରତିପତ୍ତି ପ୍ରଦର୍ଶନ କରିସୁଦ୍ଧା ଶେଷରେ ଟଳି ପଡ଼ିଛି ଏବଂ ଅନ୍ୟ ପକ୍ଷରେ ଧର୍ମର ଉପାସକ ଘଟଣା ଚକ୍ରରେ ଦୁର୍ବଳ ହୋଇଥିଲେ ସୁଦ୍ଧା ବିଧାତାର ଇଚ୍ଛାରେ ଅତିକ୍ରମଣୀୟ ବୀର୍ଯ୍ୟର ଅଧିକାରୀ ହୋଇଛି । ଶତ୍ରୁ ହସ୍ତରୁ ପ୍ରାଣପ୍ରିୟଙ୍କର ଅମୋଘାସ୍ତ୍ର ବିଧାତାର ଇଚ୍ଛାରେ ପଣ୍ଡ ହୋଇଛି ଏବଂ ବିଜୟଲକ୍ଷ୍ମୀ ପରିଶେଷରେ ସତ୍ୟ ଓ ଧର୍ମାନୁଶରଣଶୀଳ ଜୀବନର ଅନୁକୂଳ ହୋଇ ଅଛନ୍ତି । ଶତ୍ରୁପକ୍ଷ ମଧ୍ୟରେ ପିତାମହ ବୀରାଗ୍ରଗଣ୍ୟ ଭୀଷ୍ମଦେବଙ୍କର ଶୌର୍ଯ୍ୟ, ହୃଦୟବତ୍ତା, ଅନ୍ତଃଶୁଦ୍ଧି, ଭକ୍ତି, ସଦାଚରଣ, ସୌଜନ୍ୟ, ଶତ୍ରୁମିତ୍ର ଭାବଶୂନ୍ୟତା, କର୍ତ୍ତବ୍ୟଜ୍ଞାନ, ତେଜସ୍ୱିତା, ପ୍ରଭୃତି ମହାପୁରୁଷ ସୁଲଭଗୁଣ ଗୁଡ଼ିକ ନିକଟରେ ଭଗବାନ କୃଷ୍ଣ, ହଳାୟୁଧ ଓ ସମସ୍ତେ ନତମସ୍ତକ ହେବାକୁ ବାଧ୍ୟ । ଭୀଷ୍ମ ଚରିତଠାରୁ ଉଜ୍ଜ୍ୱଳତମ ଚରିତ୍ର ମହାଭାରତରେ ବିରଳ । କିନ୍ତୁ ବିଧାତାର ଇଚ୍ଛାଭିନ୍ନ ଓ ସେ ସତ୍ୟବ୍ରତୀ ଭାବରେ ସମରାଙ୍ଗଣରେ ପାଣ୍ଡବମାନଙ୍କ ବିପକ୍ଷ ରୂପେ ହେବାକୁ ବାଧ୍ୟ ହେଲେ ।


Digitized by srujan ka@gmail.com

ମକର ମାସେ ଅବଧ୍ୟ ମହାତେଜ ଜ୍ୟୋତି ।
ଅନଳ କିରଣ ଜିଣି ଦଶେ ଶର କାନ୍ତି ।
ଫଳେ ଫଳେ ପରତାଳ ହୁଏ ଶର ବେନି,
ଦରଷାର ଧାରାପରି ବହଲ ବହନି ।
ଯୁଦ୍ଧେ ବିମୁଖ ହେଲେଣି ପାର୍ଥ ମହାମତି,
ତୂଣୀରୁ ଗାଙ୍ଗେୟ ତହୁଁ କାଢ଼ିଲେ ଶକତି ।
ତୂଣୀରୁ କାଢନ୍ତେ ସେହୁ ଥିଲା ଏକ ମୂର୍ତ୍ତି,
ହସ୍ତରେ ଘେନନ୍ତେ ହେଲା ବିଂଶ ମୂର୍ତ୍ତି ଶକ୍ତି ।

ଏବଂ କ୍ରମେ ଯେହୁ ଶକ୍ତି ପ୍ରୟୋଗ ହୋଇସାରିଲା ବେଳକୁ କୋଟିଗୁଣରେ ତେଜସ୍ୱର ହୋଇଉଠେ । ଏହାର ସମ୍ମୁଖୀନ ହେବାକୁ ସମସ୍ତେ ଅସମର୍ଥ । ଶେଷରେ ଶ୍ରୀକୃଷ୍ଣଙ୍କ ଇଚ୍ଛାକ୍ରମେ ସୁଦର୍ଶନ ଚକ୍ର ଅମନ୍ତ୍ରିତ ହୋଇ ତାହାକୁ ଛେଦନ କରନ୍ତି । ତେଣୁ 'ବିଧିରହୋ ବଳବାନ୍' ଏହି ଉକ୍ତି ପଦେ ପଦେ ସାର୍ଥକ ହୋଇଛି ।

ଭୀମ ଓ ଦୁଃଶାସନର ଯୁଦ୍ଧ, ଦୁଃଶାସନର ବାହୁ ଉତ୍ପାଟନ ଭୀମର ବୀର ଗର୍ଜନ, ମାନଗୋବିନ୍ଦ ଊରୁ ଭଙ୍ଗ । କର୍ଣ୍ଣଙ୍କର ଅତୁଳନୀୟ ସମର କୌଶଳ ଓ ଅମୋଘାସ୍ତ୍ର ପ୍ରୟୋଗ ନୈପୁଣ୍ୟ ଦ୍ରୋଣାଚାର୍ଯ୍ୟଙ୍କର ଅପ୍ରତିଦ୍ୱନ୍ଦୀ ଶକ୍ତିର ପରାକାଷ୍ଠା, ଅର୍ଜ୍ଜୁନଙ୍କର ପ୍ରଳୟଙ୍କର ବିକ୍ରମ ଓ ବାଣ ପ୍ରୟୋଗ କୌଶଳ ସାରଳା ମହାଭାରତରେ ଯେଉଁ ବର୍ଣ୍ଣନାତୀତ ରୂପରେ ରୂପାୟିତ ହୋଇଛି, ମୂଳ ସଂସ୍କୃତ ମହାଭାରତରେ ସେ ସବୁ ଅନେକାଂଶରେ ହୋଇଥିଲେ ସୁଦ୍ଧା ସ୍ଥଳେ ସ୍ଥଳେ ଅତିରଞ୍ଜନ ଓ ଚତୁର ଚମତ୍କାରିତା ଦୃଷ୍ଟିରୁ ସାରଳାଙ୍କର କଳ୍ପନା ଅଧିକ ଅଗ୍ରସର ହୋଇଯାଇଛି ।


Digitized by srujan ka@gmail.com

## ହିଡ଼ମ୍ବକର ଆକ୍ରମଣ: —

ଏ ସମୟେ ହିଡ଼ିମ୍ବକ ବିଳମ୍ବ ଦେଖିଣ,
ଧାଇଁଲ କୋପେ ଅସୁର ଧର୍ମ ଉପେକ୍ଷିଣ ।
କାଳାନ୍ତକ ଅସୁର ସେ ପ୍ରଚଣ୍ଡ ସମର୍ଥ,
ଆକାଶ ମେଘଲେ ଲାଗୁଅଛି ତାର ମାଥ ।
ବାମକରେ ପର୍ବତେକ ଡାହାଣେ ବୃକ୍ଷେକ,
ମନ୍ଦର ଗିରିକି ଜଡ଼ ଆସିଲ ପ୍ରତ୍ୟକ୍ଷ ।
ଖାଙ୍କର କେଶ ଉଡ଼ଇ ଭଇରବ ରୂପ,
ଦିଗମ୍ବର ମୂର୍ତ୍ତି ଭୂମି ଘୋଟଇ କୌଣପ ।
ଲହ ଲହ ଜିହ୍ୱା ମୁଖ ଦନ୍ତ ବିକଟାଳ
ରେରେକାର ଶବଦରେ ଖଙ୍କାଳି କଙ୍କାଳ ।
ଆକ୍ରମଇ ହିଡ଼ିମ୍ବକ ସେ ମହା ବଳିଷ୍ଠ,
ଯାହାର ଭୟେ ଆସନ ଛାଡ଼େ ସୁରଶ୍ରେଷ୍ଠ ।
ପାଞ୍ଚବେଳ ଧାଉଁଦେଲ ଅସୁର ସ୍ୱର୍ଗକୁ,

× × ×

ଏକ ଚରଣ ତାହାର ପଦ୍ମଶ୍ରେକ ଯେପି,
ପୃଥ୍ୱୀଯାକ ତେଇଁପାରେ ଦୈତ୍ୟ କାମରୂପୀ ।
ସ୍ୱତେ ଭୀମକୁ ଧଇଲ ଦଇତ ଆକର୍ଷି,
ଦୈତ୍ୟ ଗଳେ ଲଗାଇଲ ଭୀମ ଭୁଜ ପାଶୀ ।
ପାଦେ ପାଦକୁ ଛନ୍ଦିଲ ଦୈତ୍ୟ ମହାବଳୀ,
ଅସୁରକୁ ପକାଇଲ ପବନଜ ତୁଳି ।
ହିଡ଼ିମ୍ବକ ମାଡ଼ି ବସି ଭୀମସେନ ହୃଦେ,
ବଜ୍ରମୁଷ୍ଟି ପ୍ରହାରିଲ କୋପେ ଘୋରନାଦେ ।

ଯେସନେ ଅକାଶୁ ବଜ୍ର ପଡ଼ଇଛି ଝଞ୍ଜ,
ପ୍ରତଜ୍ଞାବନ୍ତ ସେ ଭୀମ ଉଠେ ଦେଇ ରଡ ।
ଭୀମସେନ ଅବର୍ଜିଣ ଧଇଲ୍ଲ ତାହାକୁ,
ବେନଭୁଜେ ଅକର୍ଷିଣ ବଦାବନ୍ତ ବୃକ୍ଷୁ ।
ଧରନ୍ତ ପଡ଼ନ୍ତ ଲେଉଟନ୍ତ ମାଲବନ୍ଧେ,
କେହୁ କାହାଠାରୁ ଊଣ ନୁହନ୍ତ ନା ଯୁଦ୍ଧେ ।
ହିଡ଼ମ୍ବକ ବନେ ହେଲା ଦୁହିଁଙ୍କ ସମର,
ଦଶ ଯୋଜନ ପର୍ଯ୍ୟନ୍ତେ ବୃକ୍ଷ ଗିରତ୍ର । ଇତ୍ୟାଦି

ମହାଭାରତର ବହୁ ଛନ୍ଦରେ ବହୁରସ ପରିବେଷଣ କରିବାରେ ଶାରଳାଙ୍କର ସ୍ଥାନ ଖାଲି ଉତ୍କଳ ସାହିତ୍ୟ କାହିଁକି ଭାରତ ସାହିତ୍ୟରେ ଅପ୍ରତିଦ୍ୱନ୍ଦୀ । 'ଯାହା ନାହିଁ ଭାରତରେ ତାହା ନାହିଁ ଭାରତରେ' ଏ ଉକ୍ତି ଅକ୍ଷରେ ଅକ୍ଷରେ ସତ୍ୟ । ସହସ୍ର ସହସ୍ର ପୌରାଣିକ ଉପାଖ୍ୟାନ, ଉପଦେଶ, ନୀତି, ଶୃଙ୍ଖଳିତ ଭାବରେ ପ୍ରଦତ୍ତ ହୋଇଛି ଉତ୍କଳ ଗୌରବର ମହାଭାରତରେ ବାଉଳ ବର୍ଣ୍ଣନାରେ । ପରିଚୟ ପ୍ରଦାନ କରିବାରେ ସାରଳାଙ୍କର ଉତ୍କଳ ପ୍ରୀତି ସ୍ପଷ୍ଟ ହୋଇଛି ସ୍ୱତନ୍ତ୍ରଭାବରେ । ଉତ୍କଳ କଳିଙ୍ଗ, ଉଡ୍ରରାଷ୍ଟ୍ର ପ୍ରଭୃତିର ପ୍ରସଙ୍ଗୋଚିତ ଚିତ୍ରଣ କରିବା ଭିନ୍ନ କୁରୁ ପାଣ୍ଡବ ଓ ଅନ୍ୟାନ୍ୟ ଚରିତ୍ରାବଳୀର ଚିତ୍ରଣରେ ଅନ୍ୟାନ୍ୟ ଦୃଶ୍ୟାବଳୀର ବର୍ଣ୍ଣନାରେ ସାରଳା ଉତ୍କଳ ଚିତ୍ର, ଉତ୍କଳୀୟ ପଲ୍ଲୀଜୀବନ, ଉତ୍କଳୀୟ ବେଶଭୂଷା, ମର୍ଯ୍ୟାଦା ଜୀବନଯାପନରେ ଗତିବିଧି ପ୍ରକୃତି ପ୍ରଦାନ କରିଅଛନ୍ତି । ମହାଭାରତ ଭାଷାତତ୍ତ୍ୱ ଦୃଷ୍ଟିରୁ ବାଉଳ ପ୍ରାଚୀନ ଉତ୍କର୍ଷ ବ୍ୟଞ୍ଜକ ଶବ୍ଦ ସମ୍ଭାରରେ ପରିପୂର୍ଣ୍ଣ ଏବଂ ଶବ୍ଦତତ୍ତ୍ୱବିତ୍‌ମାନେ ସାରଳା ମହାଭାରତର ବହୁ ଶବ୍ଦାବଳୀ ଓ ସେଗୁଡ଼ିକର ଯୁଗୋଚିତ ପରିବର୍ତ୍ତନ, ବ୍ୟବହାର


Digitized by srujan ka@gmail.com

ପ୍ରୟୋଗ ସମ୍ବନ୍ଧରେ ବହୁଜ୍ଞାନ ଅର୍ଜନ କରିବାଲାଗି ସୁଯୋଗ ପାଇଥାନ୍ତି । ବ୍ୟଙ୍ଗ, ବିଦ୍ରୂପ, ହାସ୍ୟରସ ପ୍ରଭୃତିର ପରିବେଷଣ ହୋଇଛି ବହୁପରିମାଣରେ ଓ ପ୍ରତ୍ୟେକ ପର୍ବରେ ମହାଭାରତକୁ ମୂର୍ଖ ଓ ପଣ୍ଡିତ ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କର ସର୍ବାଙ୍ଗୀନ ଭାବରେ ଉପଭୋଗ୍ୟ ଓ ତାହାର ରଚନା ମାଧୁରୀ ଉପସେବ୍ୟ । ପଲ୍ଲୀପଲ୍ଲୀରେ ପୁରାଣ ପାଠ ବେଳେ ବୃଦ୍ଧ, ବୃଦ୍ଧା ଅଧିକ ଆକୃଷ୍ଟ ହୋଇପଡ଼ନ୍ତି ଏବଂ ସେହି ବିଷୟରେ ଆଲୋଚନା କରିବାରେ ଅଧିକ ଆନନ୍ଦ ଅନୁଭବ କରିଥାନ୍ତି । ସାରଳାଙ୍କର ମହାକବିତ୍ୱ ବିଷୟରେ ସେମାନେ ଆଲୋଚନା କରିବାକୁ ଅବକାଶ ନ ପାଇଲେ ମଧ୍ୟ ତାଙ୍କ ରଚନା ଚମତ୍କାରିତା ବଳରେ ବିଷୟବସ୍ତୁ ଓ ଚରିତାବଳି ଯେପରି ରଚିତ ହୋଇଛି ଓ ଯେଉଁ ଯେଉଁ ଉପାଦାନ ଦୈନନ୍ଦିନ ଜୀବନ-ପ୍ରବାହର ଅନୁକୂଳ ହୋଇ ପ୍ରଦତ୍ତ ହୋଇଛି ସେଗୁଡ଼ିକ ହିଁ ସେମାନଙ୍କ ମନୋବୃତ୍ତିକୁ ଅଧିକାର କରି ବସେ ।

ଶିମୂଳ ବୃକ୍ଷ ବୃତ୍ତାନ୍ତ, ସୁଧର୍ମାସଭା, ଶିଶୁପାଳ ବଧ, ପଶା-ଖେଳ ଦ୍ରୌପଦୀଙ୍କ ବସ୍ତ୍ରହରଣ, ନାଗାର୍ଜ୍ଜୁନ ବୃତ୍ତାନ୍ତ, ପାଣ୍ଡବମାନଙ୍କ ଗୁପ୍ତବାସ, କୀଚକ ବଧ ଓ ବିରାଟ ବୃତ୍ତାନ୍ତ, ଅଭିମନ୍ୟୁ ବୃତ୍ତାନ୍ତ, ନହୁଷ ଉପାଖ୍ୟାନ, ହରିଶ୍ଚନ୍ଦ୍ରୋପାଖ୍ୟାନ, ଧର୍ମବକ ଉପାଖ୍ୟାନ, ଗଜକଚ୍ଛପ ଯୁଦ୍ଧ, ନଳଦମୟନ୍ତୀ ଉପାଖ୍ୟାନ, ତ୍ରିପୁରାସୁର ବଧ, ଭାଗବତ ଗୀତା, ହିରଣ୍ୟକଶ୍ୟପୁ ଉପାଖ୍ୟାନ, ତୁଳସୀ ବଣି, ବାଘ ଉଲାମୁହାଁ କାଙ୍କର ବିବରଣ, ବ୍ୟାସସରୋବର, ଶ୍ରୀକୃଷ୍ଣଙ୍କର ମହା-ପ୍ରୟାଣ ପ୍ରଭୃତି ଅସଂଖ୍ୟ ପ୍ରସଙ୍ଗ ସାରଳାଙ୍କର ବିରାଟ କୃତୀରେ ଜୀବନ୍ତ ଓ ରସାଳଭାଷା ଭଙ୍ଗୀରେ ଅଧିକ ଲାବଣ୍ୟମୟ ହୋଇଛି । ବହୁକାଳ ପରେ ରାଜା କୃଷ୍ଣସିଂହଙ୍କର ମହାଭାରତର ପରିକଳ୍ପନା

ସାରଳା ମହାଭାରତ ଉପରେ ପ୍ରତିଷ୍ଠିତ ହୋଇ ସେଥିରୁ ଉପାଦାନଗୁଡ଼ିକ ସଂଗ୍ରହ କରି ନେଇଛନ୍ତି । ପରବର୍ତ୍ତୀ ଉତ୍ତମ ମଧ୍ୟମ, ଅଧମ ସବୁ ଶ୍ରେଣୀର କବିମାନେ ସାରଳାଙ୍କ ନିକଟରେ ସମସ୍ତେ ଋଣୀ, ଏଥିରେ ସନ୍ଦେହର ଅବକାଶ ନାହିଁ । ସାରଳାଙ୍କର ସିଦ୍ଧି ଓ ସାଧକ ଜୀବନର ସହସ୍ର ପ୍ରତ୍ୟେକ ପର୍ବରେ ସେ ନିଜେ ନିରଭିମାନ ଓ ନିରହଙ୍କାର ହୃଦୟରେ ପ୍ରକାଶ କରିଅଛନ୍ତି ଏବଂ ନିଜକୁ ଦୀନ, ତୁଚ୍ଛ ଓ ସାଧାରଣଭାବରେ ଗ୍ରହଣ କରି ଆଧ୍ୟାତ୍ମିକ ଦମ୍ଭରେ ବଳୀୟାନ ହୋଇ ସ୍ୱୀକାର କରିଛନ୍ତି ଯେ, ବିଧାତାର ଇଚ୍ଛା ବଳରେ ଓ ଶକ୍ତିର ଏକନିଷ୍ଠ ଉପାସନା ବଳରେ ମନୁଷ୍ୟ ପକ୍ଷରେ ଅସମ୍ଭବ ସମ୍ଭବ ହୋଇପାରେ ଓ ଅଲଭ୍ୟ ସହଜ ଲଭ୍ୟ ହୋଇ-ପାରେ । ଜାତିର ଶିକ୍ଷକ ଓ ସଂସ୍କାରକ ସେ, ଜାତୀୟତାର ପ୍ରାଣରେ ଓ ଜାତୀୟ କଲ୍ୟାଣ ପଥରେ ଉଜ୍ଜ୍ୱଳ ଆଲୋକର ଦେଦୀପ୍ୟମାନ ଶିଖାଧର ସମଗ୍ର ମାନବ ଜାତିକୁ ବାସ୍ତବ ପ୍ରଗତି ପଥରେ ଅଗ୍ରସର କରାଇବାରେ ଅଟଳ ବିଶ୍ୱାସବନ୍ଧ ଅଗ୍ରଣୀ ସେ । ତାଙ୍କର ସ୍ଥାନ ସାହିତ୍ୟରେ ଅପୂରଣୀୟ । କବି ବା ମହାକବି ହେବାକୁ ଲାଳସା ତାଙ୍କର ଆଦୌ ନ ଥିଲେ ସୁଦ୍ଧା ସେ ସାରଳାଙ୍କର ପ୍ରସାଦରୁ ଓ ଭଗବତ୍ ପ୍ରେରଣା ବଶରୁ ସ୍ୱତଃ ମହାକବିର ମହୋଚ୍ଚ ଆସନରେ ଆସୀନ ହୋଇ ପାରିଅଛନ୍ତି ଏବଂ ତାଙ୍କ ଦିବ୍ୟ ଜୀବନ ଦର୍ଶନ ସତ୍ୟ, ଶୌଚ, ବିଶ୍ୱାସ ଓ ସାଧନା ପ୍ରଭୃତି ସ୍ୱର୍ଗୀୟ ଗୁଣାବଳୀର ଆଶ୍ରୟ ନେଇ ସମଗ୍ର ଜାତିକୁ ଶାଶ୍ୱତ ପ୍ରେରଣା ଦେବା ଫଳରେ ସେ ଚିରବନ୍ଦ୍ୟ ଓ ଚିରନ୍ତନ ଭାସ୍ୱର ହୋଇ ରହିବେ । ପ୍ରତ୍ୟେକ ହୃଦୟରେ ସେହି ଅଖଣ୍ଡ ବିଶ୍ୱାସ ନିସୃତ ମହାକବିଙ୍କର ମହାବାଣୀ ଝଂକୃତ ହୋଇ ଉଠୁ—


Digitized by srujan ka@gmail.com

ଜୟ ଜୟ ଜଗନ୍ନାଥ ଦାରିଦ୍ର୍ୟ ଭଞ୍ଜନ,
ଜୟ ଜୟ ମାୟାଧର ଆତଙ୍କ ନାଶନ ।
ଶ୍ରୀ ଶାରଳା ଚଣ୍ଡୀ ପଦେ ରହୁ ମୋର ମତି,
ଶ୍ରୀ ଶାରଳା ଚଣ୍ଡୀ ଧ୍ୟାନେ କରିବଇଁ ରତି ।
ସେ ଦେବୀ ପ୍ରସାଦେ ମୋର ବଳାଇଙ୍କ ଶକ୍ତି,
ତା ପ୍ରସଙ୍ଗେ କହିଲଇଁ ଶ୍ରୀ ମହାଭାରତ ।
ବିଶ୍ୱାସ ବଳେ ପ୍ରାଣୀଏ ତରିବେ ନିଶ୍ଚୟ,
କୀଟୁ ବ୍ରହ୍ମ ପରଯନ୍ତେ ସବୁ ବ୍ରହ୍ମମୟ ।
ନିଜକୁ ନିଜେ ଚିହ୍ନିଲେ ଭୟ ଭ୍ରାନ୍ତ ନାହିଁ,
ମାୟା ସଂସାର ଏହୁ ଯେ ଅନିତ୍ୟ ଅଟଇ ।

× × ×

ନାଶ ଯାଇଛି ଉଭୟ କୁଳ ଦୋଷ ଥିଲେ,
ବଡ଼ ଦୁରପଦ କାର୍ଯ୍ୟ ଅବିଚାରେ କଲେ ।
ପଣ୍ଡିତଜନେ ବିଚାର କର ଧର୍ମ ବାଟ;
ଅବିଚାରେ କର୍ମ କଲେ ସବୁ ହୁଏ ନଷ୍ଟ ।

---

# "ସାରଳା ସାହିତ୍ୟରେ" ଓଡ଼ିଆ ଭାଷାର ମୌଳିକତା

ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର, ଏମ୍ ଏ,

ଓଡ଼ିଶାର ଭାଷା କବିମାନଙ୍କ ମଧ୍ୟରେ ଶୂଦ୍ରମୁନି ଶାରଳା ଦାସ ସର୍ବପ୍ରଥମ କବି ।

ସ୍ୱର୍ଗାରୋହଣପର୍ବରେ ଲେଖା ହୋଇଅଛି :—

"ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ
ଦ୍ୱିତୀୟ ଜନ୍ମରେ ମୁହିଁ, ମହାକାଳ ହଂସ
ତୃତୀୟ ଜନ୍ମରେ ମୁଁ ଶାରଳା ଦାସ କବି
ଆଉ ଜନ୍ମେ ମୁହିଁ ମର୍ତ୍ତ୍ୟ ମଣ୍ଡଳେ ଜନ୍ମିବି ।
ପ୍ରତି ଜନ୍ମେ ମୁହିଁ, ପନ୍ଦର ଲକ୍ଷ କଥା ଭାବି
ଶୂଦ୍ର ଜନ୍ମେ ଷାଠି ଲକ୍ଷ କଥା ମୁଁ କହିବି
ଭକ୍ତ କଥା କହି ସାରେ ଏ ମର୍ତ୍ତ୍ୟମଣ୍ଡଳ
ତେବେ ଯାଇଁ ହୋଇବି ମୁଁ ଶିବ ଦ୍ୱାରପାଳ ।"

ଏହି ହେଉଛନ୍ତି, ସେହି କାଳିଦାସ, ଶୂଦ୍ରମୁନି, ବ୍ରହ୍ମମୁନି ସାରଳାଦାସ । ଓଡ଼ିଶାର ରାଜା କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ସମୟରେ ସାରଳା ଦାସ ମହାଭାରତ ଗ୍ରନ୍ଥ ରଚନା କରିଥିବା ପ୍ରକାଶ । କପିଳେନ୍ଦ୍ର ଦେବ ୧୪୫୨ରୁ ୧୪୭୯ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ବୋଲି ଐତିହାସିକମାନଙ୍କର ମତ ସାରଳା ଦାସ ଝଙ୍କଡ଼ ପ୍ରଗଣାସ୍ଥ ସାରଳାଦେବୀଙ୍କ ପୀଠ ନିକଟବର୍ତ୍ତୀ କୌଣସି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ।


Digitized by srujan ka@gmail.com

"ସାରଳା ଚଣ୍ଡୀନାମ ଅଟଇ ସେହି ଦେବୀ
ତାହାର ଦାସ ମୁଁ ଯେ ସାରଳାଦାସ କବି"
(ଆଦିପର୍ବ)

"ପ୍ରଣିପତ୍ତେ୍ୟ ଖଟଇ କପିଳେଶ୍ୱର ମହାରାଜା
ତେତିଶ କୋଟି ଚରଣେ ଯା'ର ପୂଜା"

ଏହି ହେଉଛନ୍ତି ଓଡ଼ିଶାର ସାହିତ୍ୟର ପଞ୍ଚଦଶ ଶତାବ୍ଦୀର ପ୍ରଥିତଯଶା ମହାକବି ଶୂଦ୍ରମୁନି ଶାରଳାଦାସ । ଏହାଙ୍କ ବିଶାଳଗ୍ରନ୍ଥ ମହାଭାରତ, ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ ଆଦି ଓଡ଼ିଶାର ପୁରପଲ୍ଲୀରେ ଲକ୍ଷ ଲକ୍ଷ ପାଠକଙ୍କର ପ୍ରାଣକୁ ଝଙ୍କୃତ କରିଥାଏ ।

ପଞ୍ଚଦଶ ଶତାବ୍ଦୀର କଥା । ସେତେବେଳକୁ ଓଡ଼ିଆ ଭାଷା ଓ ସାହିତ୍ୟ ସ୍ପଷ୍ଟ ରୂପରେଖ ଗ୍ରହଣ କରିଥିଲା । ଅଷ୍ଟମ ଓ ନବମ ଶତାବ୍ଦୀର ବୌଦ୍ଧଗାନ ଓ ଦୋହାଁ ଓଡ଼ିଆ ସାହିତ୍ୟର ପ୍ରାଥମିକ ବିକାଶ ବୋଲି ଅଧ୍ୟାପକମାନଙ୍କର ସୁଦୃଢ଼ ମତ । ଏକାଦଶ ଶତାବ୍ଦୀର ଶିଳାଲିପି ଉଦାମାନ୍ତନ ଓଡ଼ିଆ ସାହିତ୍ୟ ଓ ଭାଷାର ସ୍ପଷ୍ଟ ପରିଚୟ ପ୍ରଦାନ କରେ ।

ଅବଶ୍ୟ ଶାରଳା ଦାସ ମହାଭାରତ ମୂଳ ସଂସ୍କୃତ ଅନୁରୂପ ନୁହେଁ । ଏଥିରେ କବି ବହୁ ବିଷୟ କଳ୍ପନା ସାହାଯ୍ୟରେ ସନ୍ନି-ବେଶିତ କରିଅଛନ୍ତି ଏବଂ ବହୁ ସ୍ଥଳରେ ମୂଳ ବିଷୟ ପରିତ୍ୟାଗ କରି ଅଛନ୍ତି ।

ବିଷୟବସ୍ତୁ, ବିଷୟ ବସ୍ତୁର ସାଜସଜ୍ଜା କଳ୍ପନା ବିଳାସ ବିଳାସ୍ଥ ସମାଜ ଚିତ୍ରଣ, ଗଭୀର ଜୀବନତତ୍ତ୍ୱ ପ୍ରଖ୍ୟାପନ ଦୃଷ୍ଟିରୁ ମହାଭାରତ ଯେ ବିଶ୍ୱ ସାହିତ୍ୟରେ ସୁପ୍ରତିଷ୍ଠିତ ଏଥିରେ ସନ୍ଦେହ ନାହିଁ । ସମ୍ପ୍ରତି ଏହି କ୍ଷୁଦ୍ର ପ୍ରବନ୍ଧଟିରେ ସାରଳା ସାହିତ୍ୟ

ଭଣ୍ଡାରରେ ଓଡ଼ିଆ ଭାଷାର ପ୍ରକୃତ ସ୍ୱରୂପ ମୌଳିକତା, ଓ ତାର ବିକାଶ ଧାରା ଉପରେ ରକ୍ଷିତ ହୋଇ ପାରନ୍ତି, ତାହାହିଁ ଆଲୋଚନା କରୁଅଛୁଁ ।

ସାରଳାଙ୍କ ପରେ ଯୁଗାନୁକ୍ରମେ ବହୁ କବି ପଣ୍ଡିତ କାବ୍ୟକାର ଓଡ଼ିଆ ସାହିତ୍ୟରେ ଲେଖନୀ ଧାରଣ କରିଅଛନ୍ତି । ପରମ୍ପରା ଓ ସାଧନା କ୍ରମେ ଓଡ଼ିଆ ଭାଷା ପରିବର୍ତ୍ତିନ ପ୍ରବାହରେ ଚାଳିତ । ପୃଥିବୀର ପ୍ରତ୍ୟେକ ଅଞ୍ଚଳର ଭାଷା ପରିବର୍ତ୍ତନଶୀଳ । ଭାଷାର ଗତି ପ୍ରତି ମୁହୂର୍ତ୍ତରେ ଅନ୍ତରୂପ ବହିରୂପରେ ଭିନ୍ନ ଆକାର ଧାରଣ କରୁଥାଏ । ଚିରନ୍ତନସୃତ କୌଣସି ତଟିନୀ ଯେପରି ଗତିପଥରେ ନାନା ବୈଚିତ୍ର୍ୟ ଓ ପରିବର୍ତ୍ତିନ ମାଧ୍ୟମରେ ଆପଣାକୁ ପ୍ରକାଶ କରି ସିନ୍ଧୁ ଅଭିମୁଖରେ ପ୍ରବାହିତ ହୁଏ, ଭାଷା ସେହିପରି କାଳକ୍ରମେ ପରିବର୍ତ୍ତିନ ନିୟମରେ ଶୁଦ୍ଧ ସରଳ ଓ ପରିମାର୍ଜ୍ଜିତ ହେଉଥାଏ । ସୁଦୂର ପଞ୍ଚଦଶ ଶତାବ୍ଦୀର ଅବିମିଶ୍ର ଅନାବିଳ ଓଡ଼ିଆ ଭାଷା ଓ ଅତ୍ୟାଧୁନିକ ଅବସ୍ଥାପ୍ରାପ୍ତ ଓଡ଼ିଆ ଭାଷା ମଧ୍ୟରେ ଆକାଶ ପାତାଳ ପ୍ରଭେଦ ପରିଲକ୍ଷିତ ହୁଏ ଯେ କୌଣସି ଶିଳାଲିପିର ଭାଷା ଅନୁଧ୍ୟାବନ କଲେ ଏହି ପ୍ରସଙ୍ଗ ଆହୁରି ସରଳ ହୋଇଥାଏ । ଶିଳାଲିପିର ଭାଷା, କାବ୍ୟ ଯୁଗରେ ନାହିଁ କି କାବ୍ୟଯୁଗର ଭାଷା ଅଧୁନିକ କାବ୍ୟ କବିତାରେ ପରିଦୃଷ୍ଟ ହୁଏ ନାହିଁ । ଭାଷା ଏକ ଚିରନ୍ତନ ପ୍ରବାହ ଏବଂ ଏହାର ଲଘୁ ତରଙ୍ଗ ଲୀଳା କେବଳ ସେହି ପ୍ରବାହର ଜୀବନ ମାତ୍ର । ସେହି ଦୃଷ୍ଟିରୁ ଆଲୋଚନା କଲେ ଜଣାଯାଏ 'ସାରଳାଦାସ'ଙ୍କର ଭାଷା ଓଡ଼ିଆ ଭାଷା ଇତିହାସରେ ଏକ ସ୍ୱାବଲମ୍ବନଶୀଳ ଅନୁଷ୍ଠାନ, ଯାହାର କ୍ଷୟ ନାହିଁ କି ବିନାଶ ନାହିଁ । ଏହିଠାରେ ଓଡ଼ିଆ ଭାଷା ଅଦ୍ୟାବସ୍ଥା ସମ୍ପର୍କରେ ସଂକ୍ଷିପ୍ତ ବିଚାର ଆବଶ୍ୟକ ।

ସମୟର ଅନନ୍ତ ପ୍ରବାହରେ, ଗତିଶୀଳ ଜୀବନ୍ତ ଭାଷାର ପରିବର୍ତ୍ତନ ପନ୍ଥାରେ ପ୍ରାଚୀନ **ଆର୍ଯ୍ୟ** ଭାଷା ପ୍ରାକୃତରେ ରୂପାନ୍ତରିତ ହୋଇ କେଉଁଠାରେ ଶୌରସେନୀ, କେଉଁଠାରେ ମହାରାଷ୍ଟ୍ରୀ ବା ପାଲି ନାମରେ ଅଭିହିତ ହୋଇଥିଲା । ଏହି ପ୍ରାକୃତ ଭାଷା ହିଁ ଆଧୁନିକ ଭାରତୀୟ ଭାଷାମାନଙ୍କର ମୂଳ ଉତ୍ସ । ଓଡ଼ିଆ ଭାଷା ପ୍ରାକୃତ ସହିତ କିପରି ଘନିଷ୍ଠ ଭାବରେ ଜଡ଼ିତ, ତାହା ନିମ୍ନଲିଖିତ କେତୋଟି ଉଦାହରଣରୁ ସହଜରେ ଉପଲବ୍ଧ ହେବ ।

| ପ୍ରାକୃତ | ଓଡ଼ିଆ | ସଂସ୍କୃତ |
|---|---|---|
| ମୁହଁ | ମୁହଁ | ମୁଖ |
| ଘିଅ | ଘିଅ | ଘୃତ |
| ସାଖର | ସାଁକର | ଶର୍କର |
| ଶେଯ | ଶେଯ | ଶଯ୍ୟା |
| ନଇ | ନଇ | ନଦୀ |
| କାଉ | କାଉ | କାକ |
| ବେଣ୍ଟ | ବେଣ୍ଟ | ବୃନ୍ତ |
| ମହୁ | ମହୁ | ମଧୁ |

ଏଥିରୁ ସହଜରେ ଧାରଣା କରାଯାଇ ପାରେ ଯେ, **ଓଡ଼ିଆ** ଭାଷାର ପ୍ରକୃତ ସ୍ୱରୂପ ପ୍ରାକୃତରେ ନିହିତ ।

ଅବଶ୍ୟ ପରବର୍ତ୍ତୀ ଅବସ୍ଥାରେ ଶାସନଗତ ପରିସ୍ଥିତିରେ ହିନ୍ଦି, ବଙ୍ଗଳା ଏବଂ ଦକ୍ଷିଣରେ ତେଲୁଗୁ ଭାଷାର ପ୍ରଭାବ ମୁସଲମାନ ଏବଂ ମରହଟ୍ଟାମାନଙ୍କ ରାଜତ୍ୱ ଫଳରେ ବହୁ ଆରବୀ, ପାର୍ସି ଏବଂ ମରହଟ୍ଟା ଶବ୍ଦର ବ୍ୟବହାର ଓଡ଼ିଆ ଭାଷାରେ ପରିଦୃଷ୍ଟ ହେଲା ।

ପଞ୍ଚଦଶ ଶତାବ୍ଦୀର ସାରଳା ଦାସଙ୍କଠାରୁ ପ୍ରଚୀନ ଓଡ଼ିଆ ସାହିତ୍ୟର ପରିମାର୍ଜିତ ନିଦର୍ଶନ ଦେଖିବାକୁ ମିଳେ । ସାରଳାଦାସଙ୍କ ମହାଭାରତ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାମାଣିକ ଭିତ୍ତି ନୁହେଁ । ତଥାପି ଏହା ଏକ ସ୍ୱତନ୍ତ୍ର ଯୁଗର ବଳିଷ୍ଠ ଓ ପରିବର୍ତ୍ତନ ସଙ୍କେତ ବହନ କରିଅଛି । ସାରଳାଦାସଙ୍କ ସାହିତ୍ୟ ପୁରିପଲ୍ଲୀରେ ସୁପ୍ରତିଷ୍ଠ ଓ ପ୍ରସାରିତ ହେବା ପୂର୍ବରୁ ଭକ୍ତ କବି ଜଗନ୍ନାଥ ଦାସଙ୍କ ଭାଗବତର ଝଙ୍କାର ଓଡ଼ିଆର ପ୍ରାଣକୁ ସ୍ପର୍ଶ କରିଥିଲା । ଅବ୍ୟବହିତ ପରେ ଭାଗବତ ଜନପ୍ରିୟ ହୋଇ ପାରିଥିଲା । ବର୍ତ୍ତମାନ ଯେତେବେଳେ ଓଡ଼ିଆ ସାହିତ୍ୟରେ ବିଭିନ୍ନ ସମସ୍ୟା ଦେଖା ଦେଇଅଛି, ଓଡ଼ିଆ ଭାଷାର ନିର୍ଦ୍ଦିଷ୍ଟ ପ୍ରମାଣ ସୁସ୍ପଷ୍ଟ ହୋଇନାହିଁ ଏବଂ ଗଣସାହିତ୍ୟ ନାମରେ ନାନାଦି ବାଦ ବିସମ୍ବାଦ ଘଟିଅଛି, ସେତେବେଳେ ସାରଳା ଦାସଙ୍କର ସାହିତ୍ୟ ଓ ତାର ସ୍ୱଚ୍ଛ ପ୍ରାଞ୍ଜଳ ପ୍ରାଣପୂର୍ଣ୍ଣ ଭାଷା ପାଠକର ଚିତ୍ତକୁ ଅସେ । ଗଣସାହିତ୍ୟ ନାମରେ ବହୁ ତର୍କବିତର୍କ ଶୁଣାଯାଏ । ପ୍ରକୃତ ଗଣସାହିତ୍ୟ ଓ ଗଣଭାଷାର ସ୍ୱରୂପ କଣ ? ଗଣସାହିତ୍ୟ କିପରି ପଦାର୍ଥ ? ଅମ୍ଭେ ଏଠାରେ ଝଙ୍କାର ପ୍ରଥମ ବର୍ଷ ଦ୍ୱାଦଶ ସଂଖ୍ୟା ସମ୍ପାଦକୀୟରୁ କେତେକାଂଶ ସମସ୍ତଙ୍କର ଅବଗତି ନିମନ୍ତେ ଉଦ୍ଧାର କଲୁ ।'

"କେତେକ ବନ୍ଧୁ ପଚାରିଛନ୍ତି ଗଣସାହିତ୍ୟ ବୋଲନ୍ତେ କଣ ବୁଝାଯାଏ ? ଅନେକେ ମନେକରନ୍ତି ଯେ, ଗଣସାହିତ୍ୟ ବୋଲି ସ୍ୱତନ୍ତ୍ର ବସ୍ତୁ କିଛି ନାହିଁ ବା ଗଣସାହିତ୍ୟ ବୋଲି କୌଣସି ନିର୍ଦ୍ଦିଷ୍ଟ ସାହିତ୍ୟ ପ୍ରତି ଗୁରୁତ୍ୱ ଦେବାର ଅବଶ୍ୟକତା ନାହିଁ ।

ବାସ୍ତବିକ ଗଣସାହିତ୍ୟ କଣ ସେଥିପ୍ରତି ଗୁରୁତ୍ୱ ଦିଆଯିବା ଉଚିତ କି ନା ଏ ବିଷୟରେ ଚିନ୍ତା ଆବଶ୍ୟକ । ପ୍ରଥମେ ଗଣସାହିତ୍ୟ କଅଣ ? ...............ବର୍ତ୍ତମାନ ବୁଝାଯିବ ଯେ, ଶୁଦ୍ଧ ସରଳ ଓଡ଼ିଆ ଭାଷାରେ ଲେଖା ସାହିତ୍ୟକୁ ଗଣ-ସାହିତ୍ୟ ବୋଲି ଆଖ୍ୟା ଦିଆଯାଇ ପାରିବ କି ନାହିଁ । ଗଣ-ସାହିତ୍ୟ ବାସ୍ତବିକ ହେଉଛି ସେହି ସାହିତ୍ୟ, ଯାହା ଗଣ ଜମ୍ବା ସାଧାରଣ ଲୋକଙ୍କର ଚିନ୍ତାକୁ ଭାଷାରେ ପ୍ରକାଶ କରେ । ଜଣେ ସାଧାରଣ ଲୋକ ତାର ନିଜର ପରିବାର ନେଇ ଚଳେ । ନିଜ ମା ବାପ ପ୍ରତି ଭକ୍ତି, ଭାଇ ଭଉଣୀଙ୍କ ପ୍ରତି ସ୍ନେହ, ସ୍ତ୍ରୀ ପ୍ରତି ପ୍ରୀତି, ଶତ୍ରୁ ପ୍ରତି କ୍ରୋଧ, ପରଲୋକ ପ୍ରତି ଭୟ, ଏ ସବୁ ନାନା ପ୍ରକାର ଭାବ ତା ମନରେ କାମ କରେ । ଏହି ସବୁ ଭାବକୁ ଲକ୍ଷ୍ୟ ରଖି ସାଧାରଣ ଜୀବନର ଯେ କୌଣସି ଚିତ୍ର ଗଣସାହିତ୍ୟ ଗଠନ କରିବ । ଏଥିରେ ସନ୍ଦେହ ନାହିଁ ।

... ... ... ... ...

ବାଲ୍ମୀକି ରାମାୟଣ ଗଣସାହିତ୍ୟର ଶ୍ରେଷ୍ଠ ନମୁନା । ପ୍ରତ୍ୟେକ ଶ୍ଳୋକରେ ଜଣେ ସାଧାରଣ ଗୃହସ୍ଥର ମନୋଭାବ ପରିସ୍ଫୁଟ । ମୋଟ କଥା ଆଧୁନିକ ସଭ୍ୟତା ବୋଲି ଯାହା କୁହାଯାଉଛି, ଯାହା କେବଳ ସହର ଜୀବନରେ ସୀମାବଦ୍ଧ । ତାହାକୁ କେନ୍ଦ୍ରକରି ଯେଉଁ ସାହିତ୍ୟ ଲିଖିତ, ତାହା ଗଣସାହିତ୍ୟ ନୁହେଁ । ଗ୍ରାମ୍ୟ ଜୀବନକୁ କେନ୍ଦ୍ରକରି ଯାହା ସାଧାରଣ ବୁଝିବା ଭାଷାରେ ଲିଖିତ ତାହାହିଁ ଗଣ ସାହିତ୍ୟ ।

ବର୍ତ୍ତମାନ ଏହି ଗଣସାହିତ୍ୟ ଓ ଗଣଭାଷା ଦୃଷ୍ଟିରୁ ସାରଳାଦାସଙ୍କର ଗବେଷଣା ହେବା ଉଚିତ । ଅମ୍ଭର ବିଚାରରେ

ସାରଳା ସାହିତ୍ୟ ଯଥାର୍ଥରେ ପ୍ରାଣପୂର୍ଣ୍ଣ ଓଡ଼ିଆ ଭାଷାର ମନୋଜ୍ଞ କୋଣାର୍କ । କେବଳ ମହାଭାରତ ରଚନାହିଁ ଓଡ଼ିଆ ଭାଷାର ମୌଳିକ ଗନ୍ତାଘର । ଛନ୍ଦ ସୌନ୍ଦର୍ଯ୍ୟ, ଶବ୍ଦ ଗଠନ ଓ ଛନ୍ଦ ବିନ୍ୟାସ ଏବଂ ଅବିମିଶ୍ର ପଦ୍ୟାତ୍ମିକତା ସାରଳା ସାହିତ୍ୟର ସମ୍ପଦ । ପ୍ରତ୍ୟେକ ଶବ୍ଦ ମୌଳିକ, ସୁଶ୍ରାବ୍ୟ ଓ ସୁରମ୍ୟ । ପାଠକମାନଙ୍କର ଗୋଚରାର୍ଥେ ସାରଳାଦାସଙ୍କ ରଚନାରୁ ଉଦ୍ଧୃତ ପ୍ରଦତ୍ତ ହେଲା ।

"ଏହା ନାସାରୁ ବାହାର ଯେବଣ ପବନ"
ନମ୍ବ ସାହାଡ଼ିଆରେ ଲାଗିଲେ ହେବ ଚନ୍ଦନ
ତାମ୍ବୁଳ ବର୍ଜିତେନ ଅଧରର ରଙ୍ଗ ଅତ୍ୟନ୍ତ
ବାଳ ଅଦିତ୍ୟ ଜ୍ୟୋତିଙ୍କ ଜିଣାଇ ସତତ
ବିମ୍ବ ଫଳ ପଟାନ୍ତର ନୁହେଁ, ବୃଦ୍ଧକାଳେ
ତେଣୁ ଲଜ୍ଜାଭୟରେ ଝଡ଼ି ପଡ଼ଇ ଭୂତଳେ ।

+ + +

ପର୍ବତ ଉପାଡ଼ି ଧରି ଦଇତ୍ୟ ଧାମଇ
ରାମଙ୍କ ଉପରେ ପୁଣି ପ୍ରହାରିଲା ନେଇ (ବିଲଙ୍କା)

ଏଠାରେ ଦଇତ୍ୟ ଏବଂ ଧାମଇ ଶବ୍ଦ ଅଲୌକିକ ଭାବରେ ବ୍ୟବହୃତ । ସାରଳା ମହାଭାରତରେ ବହୁ ଶବ୍ଦ ବହୁ ପ୍ରୟୋଗ ଦେଖାଯାଏ । ଯାହାର ପ୍ରକୃତ ଓଡ଼ିଆ ରୂପ ବର୍ତ୍ତମାନ ପ୍ରାୟ ଲୋପ ପାଇଲାଣି ।

'ଅସାଦ୍ଧମ' ଦେବଙ୍କ ଦୁର୍ଲ୍ଲଭ ଯେ (ଦେବଦୁର୍ଲ୍ଲଭ) 'ଘାଏଣ' (ଘାତ ଅର୍ଥରେ) 'ଅମୋହ ଶକତ (ଅମୋଘ ଅସ୍ତ୍ର) 'ବଢ଼ାଇ

ପ୍ରତାପୀ' 'ସନ୍ୟନ୍ତ', 'ମାନନ୍ତ' 'ଅମ୍ଭନ୍ତ' 'ଦେବତାନ୍ତ' 'ଅନ୍ତସ୍ତଛେ' ['ଛ'ସ୍ଥାନରେ 'ଛ'] 'ଷୀରସ୍ଥର' 'ଭଗତ୍‌ବତ୍ସଳା [ଭକ୍ତବତ୍ସଳା] 'ଉପାମା' 'ଉପାମ' [ଉପମା] ପ୍ରଭୃତି ଏକାଧିକ ଶବ୍ଦର ବ୍ୟବହାର ପ୍ରକୃତରେ ଏକ ବିଶେଷ ଯୁଗରେ ଓଡ଼ିଆ ଶବ୍ଦମାଳାର ଅଫୁରନ୍ତ ସୌନ୍ଦର୍ଯ୍ୟ ପ୍ରକାଶ କରିବ । ନିକଳ, ଯାବନିକ ଶବ୍ଦ, ସାରଳା ଦାସଙ୍କ ରଚନାରେ ତାହାର ବ୍ୟବହାର ଅତି ସୁନ୍ଦର ।

"ନେସ ତହୁଁ ଗଲାଯାଇଁ" 'ଯମୁନାଧାରେ ନିକଳି' 'ପରାକ୍ରମ' ସ୍ଥାନରେ 'ପ୍ରାକର୍ମ' 'ତଲେ' ସ୍ଥାନରେ ତଲସ୍ତ, ଅଛସି, କରସି, ହୁଅଇ, ଦେଖସି (ଅଛେ, କରଇ ହୁଏ, ଦେଖାଇ), ଦ୍ରୌପଦୀ ସ୍ଥାନରେ 'ଦୌପଦୀ'ର ବ୍ୟବହାର ମହାଭାରତରେ ଦେଖାଯାଏ । 'ଭ୍ରଷନା' (ଭର୍ତ୍ସନା) 'ଵଙ୍କ ବନ୍ତା' (ବିକବନ୍ତ) 'ବିକୋଦର' (ବୃକୋଦର) ଦେବାଦେବୀ' (ଦେବଦେବୀ), 'ଅନର୍ଯ୍ୟାପା', ବିଶ୍ଵାନର 'ନମୀଷୀ' ଯଶୋବନ୍ତୀ, 'ବୃହସ୍ପତି ପ୍ରଭୃତି ଶବ୍ଦର ପ୍ରଚଳନ ସାରଳା ସାହିତ୍ୟରେ ପରିବ୍ୟାପ୍ତ ।

ବହୁବଚନରେ 'ନାରୀଗଣମାନେ' ବୋଲି ବ୍ୟବହାର କରାଯାଇଛି ଯଥା—"ମଙ୍ଗଳଧ୍ୱନି କରନ୍ତେ ନାରୀଗଣମାନେ"ର ଦୃଷ୍ଟାନ୍ତ । ଘାଏଲ, ଘୁମାଇଲ, ଘାତରେ, ମହେଶାସୁର (ମହିଷାସୁର) ଏବଂ ଜାଣିମୁ (ଜାଣିବୁ) କରିଲଣି ସ୍ଥାନରେ କରିଲନ, ଏପରି ସହସ୍ରାଧିକ ବ୍ୟବହାର ସେତେବେଳେ ଭାଷାରେ ସିଦ୍ଧ ହୋଇଥିଲା । ଅଟିଅଣି ଥାଟ ତିବା ପଚ୍ଛୁଅଣି ଥାଠ ଅଜକାଲି କେହି ସାହିତ୍ୟରେ ବ୍ୟବହାର କରି ନ ଥାନ୍ତି । ଏହି ଭଳି ସଂଖ୍ୟାଧିକ ଶବ୍ଦର ମୌଳିକ ପ୍ରୟୋଗ ଓ ଅର୍ଥ ସାରଳାଙ୍କ ସାହିତ୍ୟରେ ପ୍ରତିଭାତ ।

'ଛାହାନ୍ତ', 'ମୁକୁ' (ମତେ), 'ତୁତୁ' (ତୋତେ) 'ପୁନକଇ' (ପୁନକୁ), 'ପ୍ରୋହୃତ', 'ବୋଲନ୍ତା', 'ଅବଜ୍ଞାପ୍ଯା ଅଛଇ', 'ଏହା-ତହୁଁ', 'ଜଣିଲକୁ' (ଜାଣିବାକୁ), 'ଶୁଣିବାହେ', 'ଜୀବନ୍ତେ' (ଜଥାଭୂଥାଭ), 'ଅମ୍ଭର ହୋଇଲା ନାହିଁ' ଅନ୍ୟାନ୍ୟ 'ମଧପାନ ପଣେର' 'ଯୁଦ୍ଧଂଷ୍ଟି' ଗଲେହେଁ, ଯିବଇଁ, 'ପରଣାମି' 'ସ୍ୱେକ (ଏକ) 'ପଡ଼ାଟେ', ମାରଇଁ ସଭାସ୍ୱେଁ, ସମାର୍ଜିତା, ସ ମର୍ଥ (ସମର୍ଥ) ଏହ୍ନାପର ବହୁ ବ୍ୟତକ୍ରମ ଓ ଅସାଧାରଣ ଶବ୍ଦ ଗଠନ ସାରଳା ସାହିତ୍ୟର ପ୍ରାଣ ।

ମାତ୍ର ସାରଳା ସାହିତ୍ୟର ଶବ୍ଦ ଓ ଭାଷା ସମ୍ଭାର କାବ୍ୟ ଯୁଗକୁ ଡେଇଁ ପାରିଲା ନାହିଁ । କାବ୍ୟଯୁଗର ଲେଖକଶ୍ରେଣୀ କେବଳ ସଂସ୍କୃତ କାବ୍ୟ ପନ୍ଥା ପଥିକ ଥିଲେ । ତେଣୁ ସେହି ଯୁଗର କାବ୍ୟର ଭାଷା ପୂର୍ଣ୍ଣତଃ ସଂସ୍କୃତ ବହୁଳ । ସାରଳା ଦାସଙ୍କର ଭାଷାରେ ଯେପରି ମୌଳିକତା ଓ ନିରବଚ୍ଛିନ୍ନ ସରସତା ଅଛି । ଶବ୍ଦ ଗଠନରେ ଯେପରି ମନୋହାରିତା ଓ ସରସତା ପ୍ରକଟିତ ପ୍ରତ୍ୟେକ ଶବ୍ଦ ଯେପରି କବି ହୃଦୟର ଗଭୀର ଭାବ ଓ ଅନୁଭୂତିର ବାହକ ହୋଇପାରିଛି । ଅଜି ଅଧୁନାତନ ଯୁଗରେ ସେହି ଭାଷା ଅଡ଼ମ୍ବର ଓ ଭାଷାବୃ ମୁକ୍ତ ବିଳାସ । କଳ୍ପନା ପ୍ରାଚୁର୍ଯ୍ୟ ସ୍ୱପ୍ନ ମାତ୍ର ।

ମହାଭାରତର ଦେଶାତ୍ମବୋଧ । ସ୍ୱଦେଶାନୁରାଗ ଗଭୀର ସାମାଜିକତା । ତୀବ୍ର ନୈତିକତା, ନିବିଡ଼ ପ୍ରାଣତା, ସୁରମ୍ୟ, ଛନ୍ଦ, ସର୍ବୋପରି ଶବ୍ଦ ଗୌରବ, ଭାଷା, ଗାମ୍ଭୀର୍ଯ୍ୟ ଓ ସାଙ୍କେତିକତା ସାରଳାଦାସଙ୍କୁ ଯୁଗ ଯୁଗ ପାଇଁ ଯଶସ୍ୱୀ କରି ରଖିଥିବ । ସେ ପ୍ରକୃତରେ ଗଣସାହିତ୍ୟ ସେବୀ ଓ ଗଣଭାଷାର


Digitized by srujan ka@gmail.com

ପ୍ରତିନିଧି । ପରବର୍ତ୍ତୀ ଯୁଗରେ ଯେତେ କବି, ସାହିତ୍ୟିକ, ଉତ୍କଳ ଭାଷା ଓ ବାଣୀକୁଞ୍ଜରେ ଅବିର୍ଭୂତ ହୋଇଥିଲେ ।। ସାରଳା ଦାସଙ୍କ ବୈଦ୍ୟ ହେଲେ ଭାଷା ଗୌରବରେ ଅତିକ୍ରମ କରି ପାରିନାହାନ୍ତି ।

ଅମର ଭାଷା ସମ୍ରାଟ ଆଦି କବି ସାରଳା ଦାସ ପୂର୍ଣ୍ଣିମା ନିଶୀଥ ଚନ୍ଦ୍ର ତୁଲ୍ୟ ଚିରନ୍ତନ ଜ୍ୟୋତ୍ସ୍ନା ବିକୀରଣ କରୁଥିବେ । ତାହାହିଁ ତାଙ୍କର ନିକଷ; ଭାଷାହିଁ ତାଙ୍କର ପ୍ରାଣପୀୟୂଷ ।

